# ପରମାଣୁ

ଇଂ. ମାୟାଧର ସ୍ୱାଇଁ
ବି.ଏସ୍‌ସି.(ଇଞ୍ଜିନିୟରିଙ୍ଗ୍), ଏମ୍.ଇ.
ଡେ଼ପୁଟି ଜେନେରାଲ ମ୍ୟାନେଜର
ମେକନ, ରାଞ୍ଚି

THE BOOK POINT
ଦି ବୁକ୍ ପଏଣ୍ଟ
ଭୁବନେଶ୍ୱର

# ପରମାଣୁ

ଇଂ. ମାୟାଧର ସ୍ୱାଇଁ

ପ୍ରକାଶକ: ଦି ବୁକ୍ ପଏଣ୍ଟ
ପଠାଣି ସାମନ୍ତ ପ୍ଲାନେଟାରିୟମ୍ ପରିସର
ଆଚାର୍ଯ୍ୟ ବିହାର, ଭୁବନେଶ୍ୱର

ମୁଦ୍ରଣ: ଶିକ୍ଷାପ୍ରକାଶନୀ, ଭିଆଇପି ଏରିଆ
ଆଇ.ଆର.ସି ଭିଲେଜ, ଭୁବନେଶ୍ୱର

ଲିପି ବିନ୍ୟାସ: ସଂଘମିତ୍ରା ସାହୁ

୧ମ ସଂସ୍କରଣ: ଅଗଷ୍ଟ ୧୫, ୨୦୧୬

ମୂଲ୍ୟ: ଟ. ୬୬/- ମାତ୍ର

# ଭୂମିକା

ବିଶ୍ୱର ସମସ୍ତ ପଦାର୍ଥର ମୂଳରେ ରହିଛି ପରମାଣୁ । ପରମାଣୁରୁ ସମସ୍ତ ସଜୀବ ଓ ନିର୍ଜୀବ ବସ୍ତୁ ଗଠିତ । ଆଜକୁ ୨୫୦୦ ବର୍ଷ ପୂର୍ବରୁ ଏହା ଉପରେ ଅଧ୍ୟୟନ କରାଯାଇଥିଲେ ସୁଦ୍ଧା ଆଜି ପର୍ଯ୍ୟନ୍ତ ଏହାକୁ ସମ୍ପୂର୍ଣ୍ଣଭାବେ ବୁଝାଯାଇ ପାରିନାହିଁ । ପରମାଣୁ ଉପରେ ଗବେଷଣା ଓ କାର୍ଯ୍ୟ କରି ଅନେକ ବୈଜ୍ଞାନିକ ନୋବେଲ ପୁରସ୍କାର ପାଇଛନ୍ତି । ପରମାଣୁର ଦୁଇ ମୁଖ୍ୟ ଅଂଶ ହେଉଛି ନାଭିକ (ପ୍ରୋଟୋନ୍+ନିଉଟ୍ରନ୍) ଏବଂ ଏହା ଚାରିପଟେ ବିଭିନ୍ନ କକ୍ଷରେ ଘୁରୁଥିବା ଇଲେକ୍‌ଟ୍ରନ୍ । ବିଭିନ୍ନ ପରମାଣୁର ରାସାୟନିକ ପ୍ରତିକ୍ରିୟା ପାଇଁ ଇଲେକ୍‌ଟ୍ରନ୍ ହେଉଛି ଦାୟୀ ଏବଂ ଫଳରେ ଏହା ହେଉଛି ରସାୟନ ବିଜ୍ଞାନର ମୂଳ ଆଧାର । ପରମାଣୁର ନାଭିକରେ ପ୍ରଚୁର ଶକ୍ତି ରହିଛି ଏବଂ ଏହାକୁ ଆହରଣ କରିବାର ବିଭିନ୍ନ ଉପାୟ ବାହାର କରାଗଲାଣି । ଏହା ହେଉଛି ଆଣବିକ ପଦାର୍ଥବିଜ୍ଞାନ । ଏହିପରି ଉଭୟ ପଦାର୍ଥବିଜ୍ଞାନ ଓ ରସାୟନ ବିଜ୍ଞାନରେ ପରମାଣୁ ପଢାଯାଇଥାଏ ।

ଏହି କ୍ଷୁଦ୍ର ପୁସ୍ତକରେ ଛୋଟ ପିଲାମାନେ ବୁଝିପାରିବା ଭଳି ପରମାଣୁର ବିଭିନ୍ନ ତଥ୍ୟକୁ ଦିଆଯାଇଛି । ଏଥିପାଇଁ ଏହାକୁ ଚିତ୍ରବହୁଳ କରାଯିବା ସଙ୍ଗେ ସଙ୍ଗେ ଏଥିରେ କୌଣସି ଜଟିଳ ସୂତ୍ର ଆଦିକୁ ଦିଆଯାଇନାହିଁ । ଆଧୁନିକ କଣିକା ପଦାର୍ଥବିଜ୍ଞାନ ସମ୍ବନ୍ଧରେ କେବଳ ଟିକିଏ ସୂଚନା ଦିଆଯାଇଛି । ଆଗ୍ରହୀ ଛାତ୍ରଛାତ୍ରୀମାନେ ଚାହିଁଲେ ଏହି ବିଷୟରେ ବିଶଦ ଅଧ୍ୟୟନ କରିପାରିବେ ।

ବାସେଲିହତା, ନରସିଂହପୁର, କଟକ — ଇଂ. ମାୟାଧର ସ୍ୱାଇଁ

ମକର ସଂକ୍ରାନ୍ତି, ୨୦୧୪

# ସୂଚୀପତ୍ର


| | | |
|---|---|---|
| ୧ | ବସ୍ତୁ ଓ ପରମାଣୁ | ୫ |
| ୨ | ଡ଼ାଲଟନ୍‌ଙ୍କ ପରମାଣୁ ତତ୍ତ୍ୱ | ୭ |
| ୩ | ଇଲେକ୍‌ଟ୍ରନ୍ ଆବିଷ୍କାର | ୮ |
| ୪ | ନାଭିକ ଆବିଷ୍କାର | ୧୦ |
| ୫ | ବୋହରଙ୍କ ପରମାଣୁ ମଡ଼େଲ୍ | ୧୨ |
| ୬ | ନିଉଟ୍ରନ୍ ଆବିଷ୍କାର | ୧୪ |
| ୭ | ପରମାଣୁର ସଂରଚନା | ୧୬ |
| ୮ | ସମସ୍ଥାନିକ | ୨୨ |
| ୯ | ପରମାଣୁର ପରିପ୍ରକାଶ | ୨୫ |
| ୧୦ | ପରମାଣୁର ଆକାର | ୨୬ |
| ୧୧ | ପରମାଣୁର ବସ୍ତୁତ୍ୱ | ୨୭ |
| ୧୨ | ମୌଳିକ ପଦାର୍ଥ ଓ ଯୌଗିକ ପଦାର୍ଥ | ୨୯ |
| ୧୩ | ମୌଳିକ ପଦାର୍ଥର ପର୍ଯ୍ୟାୟ ସାରଣୀ | ୩୦ |
| ୧୪ | ରାସାୟନିକ ପ୍ରତିକ୍ରିୟା | ୩୩ |
| ୧୫ | ରାସାୟନିକ ସମୀକରଣ | ୪୧ |
| ୧୬ | ପ୍ରତିବସ୍ତୁ | ୪୩ |
| ୧୭ | ଚତୁର୍ବିଧ ମୌଳିକ ବଳ | ୪୭ |
| ୧୮ | ନାଭିକର ଶକ୍ତି | ୫୧ |
| ୧୯ | ତେଜସ୍କ୍ରିୟତା | ୫୩ |
| ୨୦ | ଆଣବିକ ବିଭାଜନ | ୫୯ |
| ୨୧ | ଶୃଙ୍ଖଳ ପ୍ରତିକ୍ରିୟା | ୬୨ |
| ୨୨ | ଆଣବିକ ସଂଯୋଜନ | ୬୪ |
| ୨୩ | ଆଣବିକ ବିଦ୍ୟୁତ୍ ଉତ୍ପାଦନ | ୬୬ |
| ୨୪ | ପରମାଣୁ ବୋମା | ୬୯ |
| ୨୫ | କାର୍ବନରୁ କାଳ ନିର୍ଦ୍ଧାରଣ | ୭୨ |
| ୨୬ | ପରମାଣୁ ବିଜ୍ଞାନର ଅନ୍ୟାନ୍ୟ ପ୍ରୟୋଗ | ୭୫ |
| ୨୭ | ଆଧୁନିକ କଣିକା ପଦାର୍ଥ ବିଜ୍ଞାନ | ୭୮ |

# ବସ୍ତୁ ଓ ପରମାଣୁ

ଆମ ଚାରିପଟେ ଆମେ ଯେଉଁସବୁ ଜିନିଷ ଦେଖୁଛେ, ତାହା ହେଉଛି ବସ୍ତୁ (Matter) । ଉଦାହରଣଭାବେ ଆମେ ଯେକୌଣସି ଜିନିଷକୁ ନେଇପାରିବା । ଚୌକି, ଟେବୁଲ୍, ବହି, ସାଇକେଲ, କାଗଜ, କଲମ, ଜଳ, ବାୟୁ, ସମସ୍ତ ପଶୁ, ପକ୍ଷୀ ଓ ପ୍ରାଣୀ ଆଦି ହେଉଛି ବସ୍ତୁ । ବିଜ୍ଞାନ ଭାଷାରେ ଏହାର ସଂଜ୍ଞା ହେଉଛି, "ଯାହା ସ୍ଥାନ ଅଧିକାର କରେ ଏବଂ ଯାହାର ଓଜନ ଅଛି, ତାହା ହେଉଛି ବସ୍ତୁ ।"

ବସ୍ତୁ କେଉଁଥିରୁ ତିଆରି ? ବହୁ ପ୍ରାଚୀନ କାଳରୁ ଦାର୍ଶନିକମାନେ ଏହା ବିଷୟରେ ଚିନ୍ତା କରିଛନ୍ତି । ପ୍ରାଚୀନ ଗ୍ରୀସ୍‌ରେ ବିଶ୍ୱାସ କରାଯାଉଥିଲା ଯେ ବିଶ୍ୱର ସମସ୍ତ ବସ୍ତୁ ଚାରିଟି ମୌଳିକ ପଦାର୍ଥରୁ ସୃଷ୍ଟି ହୋଇଛି । ଏହି ଚାରିଟି ହେଉଛି ମାଟି, ଜଳ, ବାୟୁ ଓ ଅଗ୍ନି । ଆମ ଦେଶର କେତେଜଣ ଦାର୍ଶନିକ ୫ଟି ମୌଳିକ ଉପାଦାନରେ ବିଶ୍ୱର ସମସ୍ତ ବସ୍ତୁ ସୃଷ୍ଟି ହୋଇଛି ବୋଲି କହୁଥିଲେ । ସେଗୁଡିକ ହେଲା କ୍ଷିତି (ଭୂମି ବା ମାଟି), ଅପ୍ (ଜଳ), ତେଜ (ଆଲୋକ), ମରୁତ (ବାୟୁ) ଏବଂ ବ୍ୟୋମ (ଆକାଶ) । ଖ୍ରୀ.ପୂ. ପଞ୍ଚମ ଶତାବ୍ଦୀରେ ଗ୍ରୀକ୍ ଦାର୍ଶନିକ ଡ଼େମୋକ୍ରିଟସ୍ ପ୍ରକାଶ କଲେ ଯେ ବସ୍ତୁ କେତେଗୁଡିଏ ଅତିକ୍ଷୁଦ୍ର ପଦାର୍ଥକୁ ନେଇ ଗଠିତ ଏବଂ ଏହା



[ଚିତ୍ର-1: ଡ଼େମୋକ୍ରିଟସ୍]

ଏତେ କ୍ଷୁଦ୍ର ଯେ ଏହାକୁ ଖାଲି ଆଖିରେ ଦେଖି ହେବନାହିଁ । ସେ ମଧ୍ୟ ପ୍ରକାଶ

# ସୂଚୀପତ୍ର


| | | |
|---|---|---|
| ୧ | ବସ୍ତୁ ଓ ପରମାଣୁ | ୫ |
| ୨ | ଡ଼ାଲଟନ୍‌ଙ୍କ ପରମାଣୁ ତତ୍ତ୍ୱ | ୭ |
| ୩ | ଇଲେକ୍‌ଟ୍ରନ୍ ଆବିଷ୍କାର | ୮ |
| ୪ | ନାଭିକ ଆବିଷ୍କାର | ୧୦ |
| ୫ | ବୋହରଙ୍କ ପରମାଣୁ ମଡ଼େଲ୍ | ୧୨ |
| ୬ | ନିଉଟ୍ରନ୍ ଆବିଷ୍କାର | ୧୪ |
| ୭ | ପରମାଣୁର ସଂରଚ଼ନା | ୧୬ |
| ୮ | ସମସ୍ଥାନିକ | ୨୨ |
| ୯ | ପରମାଣୁର ପରିପ୍ରକାଶ | ୨୫ |
| ୧୦ | ପରମାଣୁର ଆକାର | ୨୬ |
| ୧୧ | ପରମାଣୁର ବସ୍ତୁତ୍ୱ | ୨୭ |
| ୧୨ | ମୌଳିକ ପଦାର୍ଥ ଓ ଯୌଗିକ ପଦାର୍ଥ | ୨୯ |
| ୧୩ | ମୌଳିକ ପଦାର୍ଥର ପର୍ଯ୍ୟାୟ ସାରଣୀ | ୩୦ |
| ୧୪ | ରାସାୟନିକ ପ୍ରତିକ୍ରିୟା | ୩୩ |
| ୧୫ | ରାସାୟନିକ ସମୀକରଣ | ୪୧ |
| ୧୬ | ପ୍ରତିବସ୍ତୁ | ୪୩ |
| ୧୭ | ଚ଼ତୁର୍ବିଧ ମୌଳିକ ବଳ | ୪୭ |
| ୧୮ | ନାଭିକର ଶକ୍ତି | ୫୧ |
| ୧୯ | ତେଜସ୍କ୍ରିୟତା | ୫୩ |
| ୨୦ | ଆଣବିକ ବିଭାଜନ | ୫୯ |
| ୨୧ | ଶୃଙ୍ଖଳ ପ୍ରତିକ୍ରିୟା | ୬୨ |
| ୨୨ | ଆଣବିକ ସଂଯୋଜନ | ୬୪ |
| ୨୩ | ଆଣବିକ ବିଦ୍ୟୁତ୍ ଉତ୍ପାଦନ | ୬୬ |
| ୨୪ | ପରମାଣୁ ବୋମା | ୬୯ |
| ୨୫ | କାର୍ବନରୁ କାଳ ନିର୍ଦ୍ଧାରଣ | ୭୨ |
| ୨୬ | ପରମାଣୁ ବିଜ୍ଞାନର ଅନ୍ୟାନ୍ୟ ପ୍ରୟୋଗ | ୭୫ |
| ୨୭ | ଆଧୁନିକ କଣିକା ପଦାର୍ଥ ବିଜ୍ଞାନ | ୭୮ |

# ବସ୍ତୁ ଓ ପରମାଣୁ

ଆମ ଚାରିପଟେ ଆମେ ଯେଉଁସବୁ ଜିନିଷ ଦେଖୁଛେ, ତାହା ହେଉଛି ବସ୍ତୁ (Matter) । ଉଦାହରଣଭାବେ ଆମେ ଯେକୌଣସି ଜିନିଷକୁ ନେଇପାରିବା । ଚୌକି, ଟେବୁଲ୍, ବହି, ସାଇକେଲ, କାଗଜ, କଲମ, ଜଳ, ବାୟୁ, ସମସ୍ତ ପଶୁ, ପକ୍ଷୀ ଓ ପ୍ରାଣୀ ଆଦି ହେଉଛି ବସ୍ତୁ । ବିଜ୍ଞାନ ଭାଷାରେ ଏହାର ସଂଜ୍ଞା ହେଉଛି, "ଯାହା ସ୍ଥାନ ଅଧିକାର କରେ ଏବଂ ଯାହାର ଓଜନ ଅଛି, ତାହା ହେଉଛି ବସ୍ତୁ ।"

ବସ୍ତୁ କେଉଁଥିରୁ ତିଆରି ? ବହୁ ପ୍ରାଚୀନ କାଳରୁ ଦାର୍ଶନିକମାନେ ଏହା ବିଷୟରେ ଚିନ୍ତା କରିଛନ୍ତି । ପ୍ରାଚୀନ ଗ୍ରୀସ୍‌ରେ ବିଶ୍ୱାସ କରାଯାଉଥିଲା ଯେ ବିଶ୍ୱର ସମସ୍ତ ବସ୍ତୁ ଚାରିଟି ମୌଳିକ ପଦାର୍ଥରୁ ସୃଷ୍ଟି ହୋଇଛି । ଏହି ଚାରିଟି ହେଉଛି ମାଟି, ଜଳ, ବାୟୁ ଓ ଅଗ୍ନି । ଆମ ଦେଶର କେତେଜଣ ଦାର୍ଶନିକ ୨ଟି ମୌଳିକ ଉପାଦାନରେ ବିଶ୍ୱର ସମସ୍ତ ବସ୍ତୁ ସୃଷ୍ଟି ହୋଇଛି ବୋଲି କହୁଥିଲେ । ସେଗୁଡିକ ହେଲା କ୍ଷିତି (ଭୂମି ବା ମାଟି), ଅପ୍ (ଜଳ), ତେଜ (ଆଲୋକ), ମରୁତ (ବାୟୁ) ଏବଂ ବ୍ୟୋମ (ଆକାଶ) । ଖ୍ରୀ.ପୂ. ପଞ୍ଚମ ଶତାବ୍ଦୀରେ ଗ୍ରୀକ୍ ଦାର୍ଶନିକ ଡେମୋକ୍ରିଟସ୍ ପ୍ରକାଶ କଲେ ଯେ ବସ୍ତୁ କେତେଗୁଡିଏ ଅତିକ୍ଷୁଦ୍ର ପଦାର୍ଥକୁ ନେଇ ଗଠିତ ଏବଂ ଏହା ଏତେ କ୍ଷୁଦ୍ର ଯେ ଏହାକୁ ଖାଲି ଆଖିରେ ଦେଖି ହେବନାହିଁ । ସେ ମଧ୍ୟ ପ୍ରକାଶ



[ଚିତ୍ର-1: ଡେମୋକ୍ରିଟସ୍]

କଲେ ଯେ ଏହି କ୍ଷୁଦ୍ର ବସ୍ତୁଗୁଡିକୁ ଆଉ ଛୋଟ ଖଣ୍ଡରେ ଭାଙ୍ଗି ହେବନାହିଁ । ସେ ଏହାର ନାମ ଆଟମ୍ (atom) ଦେଲେ । ଗ୍ରୀକ୍ ଶବ୍ଦ ଆଟମସ୍ (atomus) ରୁ ଏହା ନିଆଯାଇଛି । ଆଟମସ୍‌ର ଅର୍ଥ ହେଉଛି 'ଅବିଭାଜ୍ୟ', ଅର୍ଥାତ୍ ଡ଼େମୋକ୍ରିଟସ୍‌ଙ୍କ ମତରେ ଆଟମ୍ ହେଉଛି ବସ୍ତୁର କ୍ଷୁଦ୍ରତମ ଅବିଭାଜ୍ୟ କଣିକା । ପରମାଣୁ ଇତିହାସରେ ଡ଼େମୋକ୍ରିଟସ୍‌ଙ୍କୁ 'ପରମାଣୁ ତତ୍ତ୍ୱର ଜନକ' କୁହାଯାଏ ।

ଡ଼େମୋକ୍ରିଟସ୍‌ଙ୍କ ପ୍ରାୟ ଶହେ ବର୍ଷ ପୂର୍ବରୁ ଖ୍ରୀ.ପୂ ଷଷ୍ଠ ଶତାବ୍ଦୀରେ ଆମ ଦେଶର କଣାଦ ମୁନି ମଧ୍ୟ ଏହା ଉପରେ ଆଲୋଚନା କରି ସେହି ଏକାପ୍ରକାର ମତ ଦେଇଥିଲେ । ତାଙ୍କ ରଚିତ 'ବୈଶେଷିକ ସୂତ୍ର' ପୁସ୍ତକରେ ସେ ଏହି ଅବିଭାଜ୍ୟ କ୍ଷୁଦ୍ର କଣିକାର ନାମ 'ପରମାଣୁ' ଦେଇଛନ୍ତି । ପରମାଣୁଗୁଡିକର ବିଭିନ୍ନ ପ୍ରକାର ସଂଯୋଗରୁ କିପରି ବିଭିନ୍ନ ବସ୍ତୁ ସୃଷ୍ଟି ହୋଇଛି, ସେ ତାହା ବୁଝାଇଛନ୍ତି । ସେ ଲେଖିଛନ୍ତି ଯେ, "ପ୍ରତ୍ୟେକ ବସ୍ତୁକୁ ଭାଗ ଭାଗ କରି ଗଲେ ଶେଷରେ ଯେଉଁ ଅବିଭାଜ୍ୟ ଅଂଶ ରହିଯିବ, ତାହା ହେଉଛି ପରମାଣୁ । ଏହା ହେଉଛି ଚିରନ୍ତନ ଓ ଅବିନଶ୍ୱର । ଏହା ମୁକ୍ତ ଅବସ୍ଥାରେ ରହିପାରିବ ନାହିଁ କିମ୍ବା ଏହାକୁ କେହି ଦେଖିପାରିବେ ନାହିଁ ।" ପ୍ରାଚୀନ ଭାରତର ଆଜୀଭିକ, ଜୈନ ଓ ଚରକ ସ୍କୁଲଗୁଡିକ ମଧ୍ୟ ପରମାଣୁ ସମ୍ବନ୍ଧରେ ଆଲୋଚନା କରିଛନ୍ତି ।

ଅନେକ ବର୍ଷ ଧରି ଲୋକମାନେ ପ୍ରଥମ ଅବଧାରଣା; ଅର୍ଥାତ୍ ପ୍ରତ୍ୟେକ ବସ୍ତୁ ମାଟି, ଜଳ, ବାୟୁ ଓ ଅଗ୍ନିରୁ ସୃଷ୍ଟି ବୋଲି ବିଶ୍ୱାସ କରୁଥିଲେ । ମାତ୍ର ଆଟମ୍ ବା ପରମାଣୁର ଅବଧାରଣା ହେଉଛି ଆମର ବର୍ତ୍ତମାନ ବସ୍ତୁର ବୈଜ୍ଞାନିକ ଅବଧାରଣା । ଯଦିଓ ଭାରତୀୟ ଓ ଗ୍ରୀକ୍‌ମାନଙ୍କର ଧାରଣା ଶୁଦ୍ଧ ଦର୍ଶନ ଉପରେ ପର୍ଯ୍ୟବସିତ ଥିଲା, ଆଧୁନିକ ବିଜ୍ଞାନ ଡ଼େମୋକ୍ରିଟସ୍‌ଙ୍କର ଆଟମ୍ ଶବ୍ଦକୁ ରଖିଛି । ସେହିପରି ଆମେ ଭାରତୀୟମାନେ ଏହାକୁ କଣାଦଙ୍କ ବ୍ୟବହୃତ ଶବ୍ଦ 'ପରମାଣୁ' ନାମରେ କହୁଛୁ । ପରମାଣୁ ହେଉଛି ବସ୍ତୁର ଗୋଟିଏ ମୌଳିକ ଏକକ ।

# ଡ଼ାଲଟନ୍‌ଙ୍କ ପରମାଣୁ ତତ୍ତ୍ୱ

ଇଂରେଜୀ ସ୍କୁଲ ଶିକ୍ଷକ ତଥା ବୈଜ୍ଞାନିକ ଜନ୍ ଡ଼ାଲଟନ୍ ୧୮୦୪ ମସିହାରେ ଆଧୁନିକ ପରମାଣୁ ତତ୍ତ୍ୱ ପ୍ରକାଶ କଲେ । ଏହି ତତ୍ତ୍ୱ ଅନୁଯାୟୀ ବସ୍ତୁ ଅନେକଗୁଡିଏ ଅତି କ୍ଷୁଦ୍ର, ଅବିଭାଜ୍ୟ କଣିକାକୁ ନେଇ ଗଠିତ । ସେ ମଧ୍ୟ ଏହି କଣିକାର ନାମ ଆଟମ୍ ଦେଲେ ।



[ଚିତ୍ର-2: ଜନ୍ ଡ଼ାଲ୍‌ଟନ୍]

ସେ ପରୀକ୍ଷାଗାରରେ ଦର୍ଶାଇଲେ ଯେ ପରମାଣୁଗୁଡିକୁ ଆଉ କ୍ଷୁଦ୍ରତର ଖଣ୍ଡରେ ଭାଗ କରିହେବ ନାହିଁ କିମ୍ବା ସେଗୁଡିକୁ ନଷ୍ଟ କରି ହେବନାହିଁ । ବସ୍ତୁଗୁଡିକ ଅତି କ୍ଷୁଦ୍ର ଗୋଲାକାର ପରମାଣୁ ଦ୍ୱାରା ଗଠିତ ହୋଇଥିବାର ଚିତ୍ର ସେ ପ୍ରଦାନ କଲେ । ଡ଼ାଲଟନ୍‌ଙ୍କ ଏହି ପରମାଣୁ ତତ୍ତ୍ୱ ବିଜ୍ଞାନରେ ଗ୍ରହଣୀୟ ହେଲା ମାତ୍ର ଅଧିକ ଗବେଷଣାରୁ ପରେ ଜଣାପଡିଲା ଯେ ପରମାଣୁଗୁଡିକ ମଧ୍ୟ ଆହୁରି ଛୋଟ ଛୋଟ କଣିକାକୁ ନେଇ ଗଠିତ ହୋଇଛି ।

# ଇଲେକ୍‌ଟ୍ରନ୍ ଆବିଷ୍କାର

ଉନବିଂଶ ଶତାବ୍ଦୀର ଶେଷ ଆଡକୁ ରସାୟନ ବିଜ୍ଞାନୀ ଓ ପଦାର୍ଥ ବିଜ୍ଞାନୀମାନେ ବିଦ୍ୟୁତ୍ ଓ ବସ୍ତୁ ମଧ୍ୟରେ ଥିବା ସମ୍ପର୍କକୁ ଅଧ୍ୟୟନ କରୁଥିଲେ । ସେମାନେ କାଚ୍‌ନଳୀରୁ ବାୟୁ ବାହାର କରି ତାହା ଭିତରେ ବିଦ୍ୟୁତ୍ କରେଣ୍ଟ୍‌କୁ ଗତି କରାଇ ଏହାର ପ୍ରକୃତିକୁ ଲକ୍ଷ୍ୟ କରୁଥିଲେ । କରେଣ୍ଟ୍ କାଚ୍‌ନଳୀର ଗୋଟିଏ ଇଲେକ୍ଟ୍ରୋଡ୍ ବା ବିଦ୍ୟୁଦଗ୍ର (କ୍ୟାଥୋଡ୍)ରୁ ଅନ୍ୟ ବିଦ୍ୟୁଦଗ୍ର (ଆନୋଡ୍) ଆଡକୁ ଗୋଟିଏ ରଶ୍ମି ଆକାରରେ ଯାଉଥିଲା । ଏହି ରଶ୍ମି କ୍ୟାଥୋଡ୍ ରଶ୍ମି ଏବଂ କାଚନଳୀ 'କ୍ୟାଥୋଡ୍ ରଶ୍ମି ନଳୀ' ନାମରେ ଜଣା ।



[ଚିତ୍ର-3: ଜେ.ଜେ.ଥମସନ୍]

ଇଂରେଜୀ ପଦାର୍ଥ ବିଜ୍ଞାନୀ ଜେ.ଜେ. ଥମସନ୍ 1897 ମସିହାରେ କ୍ୟାଥୋଡ୍ ରଶ୍ମିନଳୀରେ କେତେଗୁଡିଏ ପରୀକ୍ଷା କରି ଇଲେକ୍‌ଟ୍ରନ୍ ଆବିଷ୍କାର କଲେ । ପରୀକ୍ଷାରୁ ସେ ଯେଉଁ ସିଦ୍ଧାନ୍ତରେ ପହଞ୍ଚିଲେ, ତାହା ହେଉଛି:-

1. କ୍ୟାଥୋଡ୍ ରଶ୍ମି କେତେଗୁଡିଏ ଅତି କ୍ଷୁଦ୍ର ଓ ଋଣାତ୍ମକ ଚାର୍ଜ କଣିକାକୁ ନେଇ ଗଠିତ । ସେ ଏହି କଣିକାର ନାମ ଇଲେକ୍‌ଟ୍ରନ୍ ଦେଲେ ।
2. ଇଲେକ୍‌ଟ୍ରନ୍‌ଗୁଡିକ ଧାତବ ଇଲେକ୍‌ଟ୍ରନ୍‌ର ପରମାଣୁ ଭିତରୁ ଆସିଛି ।
3. ଯେକୌଣସି ପଦାର୍ଥ ପାଇଁ ଇଲେକ୍‌ଟ୍ରନ୍‌ର ଚାର୍ଜ ଓ ବସ୍ତୁତ୍ୱର ଅନୁପାତ ସମାନ

ହେଉଥିବାରୁ, ଇଲେକ୍‌ଟ୍ରନ୍ ହେଉଛି ପରମାଣୁର ଗୋଟିଏ ମୌଳିକ ଅଂଶ ।

4. ଇଲେକ୍‌ଟ୍ରନ୍‌ର ଚାର୍ଜ ଓ ବସ୍ତୁତ୍ୱର ଅନୁପାତ ବହୁତ ବେଶି ହୋଇଥିବାରୁ ଏହାର ଆକାର ବହୁତ ଛୋଟ ।



[ଚିତ୍ର-4: ଥମସନ୍‌ଙ୍କ କ୍ୟାଥୋଡ୍ ରଶ୍ମି ନଳୀ]

ପରେ ଯୁକ୍ତରାଷ୍ଟ୍ର ଆମେରିକାର ପଦାର୍ଥବିଜ୍ଞାନୀ ରବର୍ଟ ମିଲିକାନ୍ ଇଲେକ୍‌ଟ୍ରନ୍‌ର ଚାର୍ଜକୁ ମାପି ପାରିଲେ । ଏହି ଦୁଇ ସଂଖ୍ୟାରୁ (ଚାର୍ଜ ଏବଂ ଚାର୍ଜ-ବସ୍ତୁତ୍ୱର ଅନୁପାତ) ଇଲେକ୍‌ଟ୍ରନ୍‌ର ବସ୍ତୁତ୍ୱ ଜଣାପଡିଲା । ଏହା ହେଉଛି ୨.10 × $10^{-28}$ ଗ୍ରାମ୍ ।

ଇଲେକ୍‌ଟ୍ରନ୍ ଆବିଷ୍କାରରୁ ଅନ୍ୟ ଦୁଇଟି ସିଦ୍ଧାନ୍ତ ମଧ୍ୟ ମିଳିଲା । ସେହି ଦୁଇଟି ହେଉଛି,

1. ଇଲେକ୍‌ଟ୍ରନ୍ ହେଉଛି ଋଣାତ୍ମକ ଚାର୍ଜ କଣିକା ଏବଂ ପରମାଣୁ ହେଉଛି ବୈଦ୍ୟୁତିକ ନିରପେକ୍ଷ (ଅର୍ଥାତ୍ ଏହାର କୌଣସି ଚାର୍ଜ ନାହିଁ) । ଏଣୁ ପରମାଣୁ ଭିତରେ କେଉଁଠାରେ ନିଶ୍ଚିତ ଭାବରେ ଧନାତ୍ମକ ଚାର୍ଜ ଅଛି ।
2. ପରମାଣୁଠାରୁ ଇଲେକ୍‌ଟ୍ରନ୍ ହେଉଛି ବହୁତ ଛୋଟ ଓ ହାଲୁକା । ଏଣୁ ପରମାଣୁ ଭିତରେ ନିଶ୍ଚିତ ଭାବରେ ଅଧିକ ବସ୍ତୁତ୍ୱ ବିଶିଷ୍ଟ କଣିକା ଅଛି ।

ପୂର୍ବାନୁମାନ କରାଯାଇଥିବା ଏହି ଦୁଇଟି ତଥ୍ୟକୁ ପରେ ବୈଜ୍ଞାନିକମାନେ ପରୀକ୍ଷାଗାରରେ ପାଇଲେ ।

ଇଲେକ୍‌ଟ୍ରନ୍ ଆବିଷ୍କାର ଏବଂ ଗ୍ୟାସ୍ ମଧ୍ୟ ଦେଇ ବିଦ୍ୟୁତ୍ ପ୍ରବାହ ଉପରେ ଉଲ୍ଲେଖନୀୟ କାର୍ଯ୍ୟ ପାଇଁ ଥମସନ୍‌ଙ୍କୁ 1906 ମସିହାରେ ପଦାର୍ଥ ବିଜ୍ଞାନରେ ନୋବେଲ ପୁରସ୍କାର ପ୍ରଦାନ କରାଯାଇଥିଲା ।

# ନାଭିକ ଆବିଷ୍କାର

1911 ମସିହା ବେଳକୁ ନିଉଜିଲାଣ୍ଡରେ ଜନ୍ମିତ ଏବଂ ଇଂଲଣ୍ଡରେ କାର୍ଯ୍ୟରତ ପଦାର୍ଥବିଜ୍ଞାନୀ ଆର୍ନେଷ୍ଟ୍ ରୁଥରଫୋର୍ଡ଼ ତୀବ୍ର ବେଗରେ ଗତି କରୁଥିବା ଆଲ୍ଫା କଣିକା ସ୍ରୋତକୁ ଗୋଟିଏ ଅତି ପତଳା ସୁନା ପାତିଆ ଆଡକୁ ପଠାଇଲେ । ଏହାର ପର୍ଯ୍ୟବେକ୍ଷଣରୁ ସେ ଚକିତ ହୋଇଗଲେ । ଅଧିକାଂଶ କ୍ଷୁଦ୍ର ଆଲ୍ଫା କଣିକା ସୁନା ପାତିଆ ଦେଇ ସିଧା ଚାଲିଗଲା, ସତେ ଯେପରି ଏହାକୁ ବାଧା ଦେବାପାଇଁ ସେଠାରେ କିଛି ନଥିଲା । କେବଳ ଅଳ୍ପ କେତେକ କଣିକାର ଗତିପଥ ସୁନା ପାତିଆଠାରୁ ବିକ୍ଷେପିତ ହୋଇଗଲା ଏବଂ ଆଉ କେତେକ କଣିକା ସୁନା ପାତିଆରୁ ପଛକୁ ଫେରି ଆସିଲା ।



[ଚିତ୍ର-୫:ଆର୍ନେଷ୍ଟ୍ ରୁଥରଫୋର୍ଡ଼]




[ଚିତ୍ର-୬:ରୁଥରଫୋର୍ଡ଼ଙ୍କ ସୁନା ପାତିଆ ପରୀକ୍ଷା]

ଏଥିରୁ ରୁଥରଫୋର୍ଡ ସିଦ୍ଧାନ୍ତରେ ପହଞ୍ଚିଲେ ଯେ,

1. ଅଧିକାଂଶ କଣିକା ବିନା ବାଧାରେ ଚାଲି ଯିବାର କାରଣ ହେଉଛି ଯେ ସୁନା ପାତିଆରେ ଥିବା ପରମାଣୁଗୁଡିକ କଠିନ ବସ୍ତୁ ନ ହୋଇ ମୁଖ୍ୟତଃ ଶୂନ୍ୟସ୍ଥାନକୁ ନେଇ ଗଠିତ ହୋଇଛି ।
2. ପ୍ରତ୍ୟେକ ପରମାଣୁର କେନ୍ଦ୍ରରେ ଗୋଟିଏ ଛୋଟ ଏବଂ ଅଧିକ ବସ୍ତୁତ୍ୱର ବସ୍ତୁ ଅଛି ଯାହା ସହିତ ଅଳ୍ପ କେତେକ ଆଲ୍‌ଫା କଣିକାର ସଂଘର୍ଷ ହୋଇ ତାହା ପଥଚ୍ୟୁତ ହୋଇଛି ।

ରୁଥରଫୋର୍ଡ ପରମାଣୁର କେନ୍ଦ୍ରରେ ଥିବା ଏହି ଭାରି ବସ୍ତୁତ୍ୱ ବିଶିଷ୍ଟ ବସ୍ତୁର ନାମ ନାଭିକ (nucleus) ଦେଲେ ଏବଂ ପ୍ରକାଶ କଲେ ଯେ ପରମାଣୁର ସମସ୍ତ ପ୍ରୋଟୋନ୍ ଏଥିରେ ଅଛି । ନାଭିକ ଚାରିପଟେ ଇଲେକ୍‌ଟ୍ରନ୍‌ଗୁଡିକ ଏକ ବିସ୍ତୃତ ଅଞ୍ଚଳ ଦଖଲ କରି ରହିଛନ୍ତି ।

# ବୋହର୍‌ଙ୍କ ପରମାଣୁ ମଡ଼େଲ୍

ଗୋଟିଏ ପରମାଣୁ କିପରି ଦେଖାଯାଏ ? ବାସ୍ତବରେ ଏହା କେହି ଜାଣି ନାହାନ୍ତି । ବୈଜ୍ଞାନିକମାନେ ପରମାଣୁର ଆଚରଣକୁ ଅଧ୍ୟୟନ କରି ଏହା କିପରି ଦେଖାଯାଏ, ତାହା ଅନୁମାନ କରିଥାଆନ୍ତି । ଏହି ଅନୁମାନରୁ ସେମାନେ ପରମାଣୁ ମଡ଼େଲ୍ ତିଆରି କରିଛନ୍ତି । ଅନେକ ପ୍ରକାର ପରମାଣୁ ମଡ଼େଲ୍ ଅଛି । କୌଣସି ମଡ଼େଲ୍ ପ୍ରକୃତ ପରମାଣୁ ଭଳି ଦେଖାଯାଇ ନପାରେ । ମାତ୍ର ଏହା ପରମାଣୁର ଆଚରଣ ବୁଝିବା ପାଇଁ କୌଣସି ନା କୌଣସି ପ୍ରକାରେ ସାହାଯ୍ୟ କରିଥାଏ । ସବୁଠାରୁ ଉଲ୍ଲେଖନୀୟ ହେଉଛି ବୋହର୍ ପରମାଣୁ ମଡ଼େଲ୍ ।

ନିଲ୍‌ସ ବୋହର୍ 1913 ମସିହାରେ ପ୍ରଥମେ ତାଙ୍କର ପରମାଣୁ ମଡ଼େଲ୍ ତିଆରି କରିଥିଲେ । ସେତେବେଳକୁ କେବଳ ପ୍ରୋଟୋନ୍ ଓ ଇଲେକ୍‌ଟ୍ରନ୍ ଆବିଷ୍କୃତ ହୋଇଥିଲା । ତାଙ୍କ ମଡେଲ୍‌ର ସାରମର୍ମ ନିମ୍ନରେ ଦିଆଗଲା ।



[ଚିତ୍ର-7:ନିଲ୍‌ସ ବୋହର୍]

1. ପ୍ରତି ପରମାଣୁରେ ଧନାତ୍ମକ ଚାର୍ଜ ବିଶିଷ୍ଟ ତଥା ଓଜନଦାର ଏକ ନାଭିକ ଅଛି । ଇଲେକ୍‌ଟ୍ରନ୍‌ଗୁଡିକ କେତୋଟି ନିର୍ଦ୍ଦିଷ୍ଟ କକ୍ଷରେ ଏହା ଚାରିପାଖେ ଘୂରୁଥାଆନ୍ତି ।

2. ଏହି ପ୍ରତ୍ୟେକ କକ୍ଷ ଏକ ନିର୍ଦ୍ଦିଷ୍ଟ ପରିମାଣର ଶକ୍ତି ସହ ସଂପୃକ୍ତ । ଏଣୁ ଏହାକୁ ଶକ୍ତିସ୍ତର (energy level) ବା ସେଲ୍ (shell) କୁହାଯାଏ । ଯେଉଁ ଶକ୍ତିସ୍ତର ନାଭିକଠାରୁ ଯେତେ ଦୂରରେ ଅବସ୍ଥିତ, ତା'ର ଶକ୍ତି ସେତେ ବେଶି । ଏଗୁଡିକୁ ଇଂରାଜୀ ଅକ୍ଷର K, L, M, N, O କିମ୍ବା 1, 2, 3, 4, 5 ଭଳି

ସଂଖ୍ୟାରେ ଚିହ୍ନିତ କରାଯାଏ ।

3. ନିର୍ଦ୍ଦିଷ୍ଟ କକ୍ଷପଥରେ ଘୂରୁଥିବା ଯାଏ ଇଲେକ୍‌ଟ୍ରନ୍‌ଗୁଡିକ କୌଣସି ଶକ୍ତି ବିକିରଣ (radiation) କରନ୍ତି ନାହିଁ କିମ୍ବା ଅବଶୋଷଣ (absorption) କରନ୍ତି ନାହିଁ ।




[ଚିତ୍ର-୪:ଶକ୍ତି ସ୍ତର]

4. ଇଲେକ୍‌ଟ୍ରନ୍‌ଗୁଡିକ ଶକ୍ତି ଅବଶୋଷଣ କରି ନିମ୍ନ କକ୍ଷରୁ ଉଚ୍ଚ କକ୍ଷକୁ ଏବଂ ଶକ୍ତି ବିକିରଣ କରି ଉଚ୍ଚ କକ୍ଷରୁ ନିମ୍ନ କକ୍ଷକୁ ଲମ୍ଫ ପ୍ରଦାନ କରିଥାଆନ୍ତି ।

5. ପ୍ରତ୍ୟେକ ସେଲ୍‌ରେ ଏକ ନିର୍ଦ୍ଦିଷ୍ଟ ସଂଖ୍ୟକ ସର୍ବୋଚ୍ଚ ଇଲେକ୍‌ଟ୍ରନ୍ ରହିପାରିବ । ଏହି ସେଲ୍ ସମ୍ପୂର୍ଣ୍ଣ ହେଲେ ତା'ପର ସେଲ୍‌ରେ ଇଲେକ୍‌ଟ୍ରନ୍ ରହିବ ।

ପରମାଣୁ ସଂରଚନାରେ ଉଲ୍ଲେଖନୀୟ କାର୍ଯ୍ୟ କରିଥିବାରୁ ନିଲ୍‌ସ ବୋହର୍‌ଙ୍କୁ 1922 ମସିହାରେ ପଦାର୍ଥ ବିଜ୍ଞାନରେ ନୋବେଲ୍ ପୁରସ୍କାର ପ୍ରଦାନ କରାଯାଇଥିଲା ।

ବୋହର୍‌ଙ୍କ ପରମାଣୁ ଗଠନ ସମ୍ପର୍କୀୟ ଏହି ମଡ଼େଲ୍‌କୁ ସୌରଜଗତ ସହିତ




[ଚିତ୍ର-୨:ପରମାଣୁ ମଡ଼େଲ]

ତୁଳନା କରାଯାଏ । ସୌରଜଗତର ଗ୍ରହଗୁଡିକ ଯେପରି ସୂର୍ଯ୍ୟ ଚାରିପଟେ ନିଜ ନିଜ କକ୍ଷରେ ଘୂରୁଛନ୍ତି, ନାଭିକ ଚାରିପଟେ ସେହିପରି ଇଲେକ୍‌ଟ୍ରନ୍‌ଗୁଡିକ ଘୂରୁଛନ୍ତି । ଏହି ମଡ଼େଲ୍‌ଟି ହେଉଛି ଅତି ସରଳ । ଏହା ସାହାଯ୍ୟରେ ପରମାଣୁ ଗଠନ ବିଷୟରେ ସହଜରେ ଜାଣିହୁଏ । ତେଣୁ ଆମେ ମଧ୍ୟ ଏହାକୁ ପଢୁଛେ ।

# ନିଉଟ୍ରନ୍ ଆବିଷ୍କାର

ପ୍ରଥମେ ବିଶ୍ୱାସ କରାଯାଉଥିଲା ଯେ ନାଭିକରେ କେବଳ ପ୍ରୋଟୋନ୍ ଅଛି। ପ୍ରୋଟୋନ୍ ହେଉଛି ଧନାତ୍ମକ ଚାର୍ଜ ବିଶିଷ୍ଟ । ଇଲେକ୍ଟ୍ରନ୍‌ର ଚାର୍ଜ ଋଣାତ୍ମକ, ମାତ୍ର ପ୍ରୋଟୋନ୍ ଓ ଇଲେକ୍ଟ୍ରନ୍‌ର ଚାର୍ଜ ପରିମାଣ ସମାନ । ଗୋଟିଏ ପରମାଣୁରେ ଇଲେକ୍ଟ୍ରନ୍ ଓ ପ୍ରୋଟୋନ୍‌ର ପରିମାଣ ସମାନ ଥିବାରୁ ସାମଗ୍ରିକଭାବେ ପରମାଣୁ ହେଉଛି ଚାର୍ଜ ନିରପେକ୍ଷ ।

ପରମାଣୁରେ ଏକ ତୃତୀୟ ପ୍ରକାର କଣିକା ଥିବା କଥା ବୋହର୍‌ଙ୍କୁ ଜଣା ନ ଥିଲା । ତାହା ସେ ପର୍ଯ୍ୟନ୍ତ ଆବିଷ୍କୃତ ହୋଇ ନଥିଲା । ଏହାକୁ ଇଂରେଜୀ ପଦାର୍ଥ



ବିଜ୍ଞାନୀ ଜେମ୍‌ସ ଚାଡ୍‌ଉଇକ୍ 1932 ମସିହାରେ ଆବିଷ୍କାର କଲେ । ସେ ପରୀକ୍ଷା କରି ଜାଣି ପାରିଲେ ଯେ ଗୋଟିଏ ପରମାଣୁର ବସ୍ତୁତ୍ୱ ସେଥିରେ ଥିବା ମୋଟ ପ୍ରୋଟୋନ୍ ଓ ଇଲେକ୍ଟ୍ରନ୍‌ର ବସ୍ତୁତ୍ୱଠାରୁ ଅଧିକ ହେଉଛି । ଉଦାହରଣସ୍ୱରୂପ, ହିଲିୟମ୍‌ରେ 2ଟି ପ୍ରୋଟୋନ୍ ଅଛି । ଏଣୁ ଏହାର ବସ୍ତୁତ୍ୱ ବା ଓଜନ ଦୁଇଟି ପ୍ରୋଟୋନ୍ ସହିତ ସମାନ ହେବା କଥା (ଇଲେକ୍ଟ୍ରନ୍‌ର ଓଜନ ପ୍ରୋଟୋନ୍ ଓଜନ ତୁଳନାରେ ନଗଣ୍ୟ) । କିନ୍ତୁ ପ୍ରକୃତରେ ତାହା 4ଟି ପ୍ରୋଟୋନ୍ ଓଜନ ସହିତ ସମାନ । ଏହାର କାରଣ ଅନୁସନ୍ଧାନ କରୁ କରୁ ପରମାଣୁଗୁଡିକର ନାଭିକରେ ଏକ ତୃତୀୟ କଣିକାର ସନ୍ଧାନ ମିଳିଲା । ଯେହେତୁ ପରମାଣୁରେ ଇଲେକ୍ଟ୍ରନ୍ ଓ ପ୍ରୋଟୋନ୍ ସଂଖ୍ୟା ସମାନ ଏବଂ ସେମାନଙ୍କର ଚାର୍ଜର ପରିମାଣ ସମାନ ଓ ବିପରୀତଧର୍ମୀ, ତେଣୁ ଏହି ତୃତୀୟ କଣିକାର ନିଶ୍ଚିତଭାବେ କୌଣସି ଚାର୍ଜ ନାହିଁ ।

ଚାଡୱଇକ୍ ଏହି କଣିକାର ନାମ ନିଉଟ୍ରନ୍ (ନିଉଟ୍ରାଲ୍‌ରୁ) ଦେଲେ । ଏହାର ବସ୍ତୁତ୍ୱ ପ୍ରୋଟୋନ୍ ବସ୍ତୁତ୍ୱ ସହ ପ୍ରାୟ ସମାନ । ନାଭିକ ଭିତରେ ଖୁବ୍ କମ୍ ସ୍ଥାନରେ ଥିବା ଅଧିକ ସଂଖ୍ୟକ ଧନାତ୍ମକ ପ୍ରୋଟୋନ୍‌ଗୁଡିକୁ ଏହା ଏକାଠି ବାନ୍ଧି ରଖେ ବୋଲି ମତ ପ୍ରକାଶ ପାଇଲା । ନଚେତ୍ ସେଗୁଡିକ ପରସ୍ପରକୁ ବିକର୍ଷଣ କରି ଅଲଗା ହୋଇଯାଉଥାଆନ୍ତେ ।

ଚାଡ୍‌ୱଇକ୍ ଜର୍ମାନୀ ପଦାର୍ଥ ବିଜ୍ଞାନୀ ମୌରିସ୍ ଗୋଲ୍‌ଡାବର୍‌ଙ୍କ ସହ ମିଶି ପରୀକ୍ଷାଗାରରେ ନିଉଟ୍ରନ୍‌ର ବସ୍ତୁତ୍ୱ ନିରୂପଣ କରିଥିଲେ । ନିଉଟ୍ରନ୍ ଆବିଷ୍କାର ପାଇଁ ଚାଡ୍‌ୱଇକ୍‌ଙ୍କୁ 1932 ମସିହାରେ ପଦାର୍ଥ ବିଜ୍ଞାନରେ ନୋବେଲ୍ ପୁରସ୍କାର ପ୍ରଦାନ କରାଯାଇଥିଲା ।

# ପରମାଣୁର ସଂରଚନା

## (Structure of Atom)

ଆମେ ଜାଣିଲେ ଯେ ପରମାଣୁ ତିନୋଟି ଉପପରମାଣବିକ କଣିକାକୁ ନେଇ ଗଠିତ । ଏହାର କେନ୍ଦ୍ରରେ ନାଭିକ ଅଛି । ନାଭିକରେ ପ୍ରୋଟୋନ୍ ଓ ନିଉଟ୍ରନ୍ ଅଛି । ଏହି ଦୁଇ କଣିକାକୁ ମିଳିତଭାବେ ନ୍ୟୁକ୍ଲିୟନ୍ (nucleon) କୁହାଯାଏ । ନାଭିକ ଚାରିପଟେ ବିଭିନ୍ନ କକ୍ଷରେ ଇଲେକ୍ଟ୍ରନ୍‌ଗୁଡ଼ିକ ଘୂରୁଛନ୍ତି । ପ୍ରୋଟୋନ୍ ହେଉଛି ଧନାତ୍ମକ ଚାର୍ଜ କଣିକା ଓ ଇଲେକ୍ଟ୍ରନ୍ ହେଉଛି ଋଣାତ୍ମକ ଚାର୍ଜ କଣିକା । ଉଭୟର ଚାର୍ଜ ସମାନ; ମାତ୍ର ଗୋଟିଏ ଧନାତ୍ମକ ହୋଇଥିବାବେଳେ ଅନ୍ୟଟି ହେଉଛି ଋଣାତ୍ମକ । ନିଉଟ୍ରନ୍‌ର କୌଣସି ଚାର୍ଜ ନାହିଁ । ଗୋଟିଏ ପରମାଣୁରେ ପ୍ରୋଟୋନ୍ ଓ ଇଲେକ୍ଟ୍ରନ୍‌ର ସଂଖ୍ୟା ସମାନ ଥିବାରୁ ପରମାଣୁଟି ମୋଟ ଉପରେ ଚାର୍ଜ ନିରପେକ୍ଷ ହୋଇଥାଏ ।

ପରମାଣୁର କେନ୍ଦ୍ରରେ ନାଭିକ ଭିତରେ ପ୍ରୋଟୋନ୍ ଓ ନିଉଟ୍ରନ୍‌ଗୁଡ଼ିକ ଖୁନ୍ଦାଖୁନ୍ଦି ହୋଇ ଅତି ଅଳ୍ପ ଜାଗାରେ ରହିଥାଆନ୍ତି । ପରମାଣୁର ନାଭିକରେ ଥିବା ପ୍ରୋଟୋନ୍ ସଂଖ୍ୟା ହେଉଛି ଏହାର ପରମାଣବିକ ସଂଖ୍ୟା (atomic number) । ନାଭିକରେ ଥିବା ପ୍ରୋଟୋନ୍ ଓ ନିଉଟ୍ରନ୍‌ର ମୋଟ ସଂଖ୍ୟାକୁ ଏହାର ବସ୍ତୁତ୍ୱ ସଂଖ୍ୟା (mass number) କୁହାଯାଏ । ଏହି ଦୁଇଟି ସଂଖ୍ୟା ଜାଣିଗଲେ ନିମ୍ନ ସମୀକରଣରୁ ସହଜରେ ନାଭିକରେ ଥିବା ନିଉଟ୍ରନ୍ ସଂଖ୍ୟାକୁ ଜାଣିହେବ ।

ନିଉଟ୍ରନ୍ ସଂଖ୍ୟା = ବସ୍ତୁତ୍ୱ ସଂଖ୍ୟା – ପରମାଣବିକ ସଂଖ୍ୟା

ଉଦାହରଣସ୍ୱରୂପ, ଉଦ୍‌ଜାନ ପରମାଣୁର ନାଭିକରେ ଗୋଟିଏ ପ୍ରୋଟୋନ୍ ଅଛି । ଏଣୁ ଏହାର ପରମାଣବିକ ସଂଖ୍ୟା ହେଉଛି 1 । ସେହିପରି ଅମ୍ଳଜାନର ୫ଟି ପ୍ରୋଟୋନ୍ ଅଛି ଏବଂ ଫଳରେ ଏହାର ପରମାଣବିକ ସଂଖ୍ୟା ହେଉଛି ୫ ।

ଅମ୍ଳଜାନର ବସ୍ତୁତ୍ୱ ସଂଖ୍ୟା ହେଉଛି 16 । ଫଳରେ ଏହାର ନିଉଟ୍ରନ୍ ସଂଖ୍ୟା

= 16 - 8 = 8 ।

ପରମାଣୁର ଅଧିକାଂଶ ଅଂଶ ହେଉଛି ଶୂନ୍ୟସ୍ଥାନ । ରୁଥରଫୋର୍ଡଙ୍କ ସୁନା ପାତିଆ ପରୀକ୍ଷାରୁ ଏହା ଜଣାପଡିଛି । ନାଭିକ ପରମାଣୁର କେନ୍ଦ୍ରରେ ଏକ ଛୋଟ ସ୍ଥାନ ଅଧିକାର କରିଛି ଏବଂ ଇଲେକ୍‌ଟ୍ରନ୍‌ଗୁଡିକ ଏହା ଘେରିପଟେ ବିଭିନ୍ନ ସେଲ୍ ବା ଶକ୍ତିସ୍ତରରେ ବାଣ୍ଟି ହୋଇରହିଛି । ଇଲେକ୍‌ଟ୍ରନ୍ ହାଲୁକା ହେଲେ ସୁଦ୍ଧା ଏହାର ଅନେକ ଶକ୍ତି ଅଛି ଏବଂ ଏହା ତୀବ୍ର ବେଗରେ ଘୂରିଥାଏ ।

ପରୀକ୍ଷାରୁ ବୈଜ୍ଞାନିକମାନେ ଜାଣି ପାରିଛନ୍ତି ଯେ ପ୍ରତ୍ୟେକ ସେଲ୍‌ରେ ଇଲେକ୍‌ଟ୍ରନ୍ ସଂଖ୍ୟାର ଏକ ସର୍ବୋଚ୍ଚ ସଂଖ୍ୟା ଅଛି । ଉଦାହରଣସ୍ୱରୂପ, ନାଭିକଠାରୁ ନିକଟତମ ପ୍ରଥମ K-ସେଲ୍‌ରେ ସର୍ବାଧିକ 2ଟି, ତା'ପର L-ସେଲ୍‌ରେ ସର୍ବାଧିକ 8ଟି, ତୃତୀୟ ଶକ୍ତିସ୍ତର ବା M-ସେଲ୍‌ରେ ସର୍ବାଧିକ 18ଟି ଇଲେକ୍‌ଟ୍ରନ୍ ରହିପାରିବ । ଏହି ଇଲେକ୍‌ଟ୍ରନ୍ ବିନ୍ୟାସ ପାଇଁ ଗୋଟିଏ ସରଳ ସୂତ୍ର ଅଛି । ନିୟମ ଅନୁସାରେ ଗୋଟିଏ ସେଲ୍‌ରେ ସର୍ବାଧିକ ($2 \times n^2$) ଟି ଇଲେକ୍‌ଟ୍ରନ୍ ରହିପାରିବ । ଏଠାରେ n ହେଉଛି ସେଲ୍ ସଂଖ୍ୟା; ଅର୍ଥାତ୍ ପ୍ରଥମ K-ସେଲ୍ ପାଇଁ ଏହା ହେଉଛି 1, ଦ୍ୱିତୀୟ L-ସେଲ୍ ପାଇଁ ଏହା ହେଉଛି 2, ଇତ୍ୟାଦି ।

ସେହି ସୂତ୍ର ଅନୁସାରେ ବିଭିନ୍ନ ସେଲ୍‌ର ସର୍ବାଧିକ ଇଲେକ୍‌ଟ୍ରନ୍ ସଂଖ୍ୟା ନିମ୍ନରେ ଦିଆଗଲା ।

K - ସେଲ୍ $= 2 \times 1^2 = 2$ (n=1)

L - ସେଲ୍ $= 2 \times 2^2 = 8$ (n=2)

M - ସେଲ୍ $= 2 \times 3^2 = 18$ (n=3)

N - ସେଲ୍ $= 2 \times 4^2 = 32$ (n=4)

O - ସେଲ୍ $= 2 \times 5^2 = 50$ (n=5)

ଯେତେବେଳେ ଗୋଟିଏ ସେଲ୍‌ରେ ଏହାର ସର୍ବାଧିକ ସଂଖ୍ୟକ ଇଲେକ୍‌ଟ୍ରନ୍ ରହିଥାଏ, ଏହାକୁ ସମ୍ପୂର୍ଣ୍ଣ ସେଲ୍ କୁହାଯାଏ । ଉଲ୍ଲେଖଯୋଗ୍ୟ ଯେ ପରମାଣୁର ବାହ୍ୟତମ ସେଲ୍‌ରେ ଥିବା ଇଲେକ୍‌ଟ୍ରନ୍‌ଗୁଡିକ ଅଧିକାଂଶ ରାସାୟନିକ ପ୍ରକ୍ରିୟାରେ ଭାଗ ନେଇଥାଏ । ଆମେ ପରେ ରାସାୟନିକ ପ୍ରକ୍ରିୟା ସମ୍ବନ୍ଧରେ ଜାଣିବା ।

## ବିଭିନ୍ନ ପ୍ରକାର ପରମାଣୁ

ବର୍ତ୍ତମାନ ସୁଦ୍ଧା 118ଟି ପରମାଣୁ ଆବିଷ୍କାର କରାଯାଇଛି । ଗୋଟିଏ ପରମାଣୁରୁ ଅନ୍ୟ ପରମାଣୁର ପାର୍ଥକ୍ୟ ଏଥିରେ ଥିବା ଇଲେକ୍‌ଟ୍ରନ୍, ପ୍ରୋଟୋନ୍ ଓ ନିଉଟ୍ରନ୍‌କୁ ଜଣାଇଥାଏ । ପ୍ରତ୍ୟେକ ପ୍ରକାର ପରମାଣୁର ଗୋଟିଏ ନାମ ଅଛି । ସୁବିଧା ପାଇଁ ବୈଜ୍ଞାନିକମାନେ ପ୍ରତ୍ୟେକ ପରମାଣୁକୁ ଗୋଟିଏ ଚିହ୍ନ (symbol) ଦେଇଛନ୍ତି । ସବୁଠାରୁ ଛୋଟ ପରମାଣୁ ହେଉଛି ଉଦଜାନ ଯାହାର ଗୋଟିଏ ପ୍ରୋଟୋନ୍ ଅଛି ଏବଂ ସବୁଠାରୁ ବଡ଼ ପରମାଣୁ ହେଉଛି 118 ଟି ପ୍ରୋଟୋନ୍ ଥିବା ଉନୁନୋକ୍‌ଟିୟମ୍ (ununoctium) । ସାରଣୀ-1 ରେ କେତେଗୁଡିଏ ପରମାଣୁର ନାମ, ସେମାନଙ୍କର ଚିହ୍ନ, ପରମାଣବିକ ସଂଖ୍ୟା, ନିଉଟ୍ରନ୍ ସଂଖ୍ୟା, ଇଲେକ୍‌ଟ୍ରନ୍ ସଂଖ୍ୟା ଓ ବସ୍ତୁତ୍ୱ ସଂଖ୍ୟା ପ୍ରଦାନ କରାଯାଇଛି ।

ସାରଣୀ-1: କେତୋଟି ପରମାଣୁର ତଥ୍ୟ

| ମୌଳିକ ନାମ | ଚିହ୍ନ | ପ୍ରୋଟୋନ୍ ସଂଖ୍ୟା | ନିଉଟ୍ରନ୍ ସଂଖ୍ୟା | ଇଲେକ୍‌ଟ୍ରନ୍ ସଂଖ୍ୟା | ପ୍ରୋଟୋନ୍+ନିଉଟ୍ରନ୍ ସଂଖ୍ୟା (ପାରମାଣବିକ ବସ୍ତୁତ୍ୱ) |
|---|---|---|---|---|---|
| ଉଦଜାନ | H | 1 | 0 | 1 | 1 |
| ହିଲିୟମ୍ | He | 2 | 2 | 2 | 4 |
| ଲିଥିୟମ୍ | Li | 3 | 4 | 3 | 7 |
| ବେରିଲିୟମ୍ | Be | 4 | 5 | 4 | 9 |
| ବୋରନ୍ | B | 5 | 6 | 5 | 11 |
| କାର୍ବନ୍ | C | 6 | 6 | 6 | 12 |
| ଅମ୍ଳଜାନ | O | 8 | 8 | 8 | 16 |
| ସୋଡିୟମ୍ | Na | 11 | 12 | 11 | 23 |
| କ୍ଲୋରିନ୍ | Cl | 17 | 18 | 17 | 35 |
| ଲୁହା | Fe | 26 | 30 | 26 | 56 |
| ଟିଣ | Ti | 50 | 69 | 50 | 119 |
| ଆଇଯୋଡ଼ିନ୍ | I | 53 | 74 | 53 | 127 |
| ସୁନା | Au | 79 | 118 | 79 | 197 |
| ସୀସା | Pb | 82 | 125 | 82 | 207 |
| ଥୋରିୟମ୍ | Th | 90 | 142 | 90 | 232 |
| ୟୁରାନିୟମ୍ | U | 92 | 146 | 92 | 238 |
| ପ୍ଲୁଟୋନିୟମ୍ | Pu | 94 | 150 | 94 | 244 |
| ଡ଼ର୍ମଷ୍ଟାଟିୟମ୍ | Ds | 110 | 160 | 110 | 270 |

## କେତୋଟି ପରମାଣୁର ସେଲ୍‌-ବିନ୍ୟାସ

ଉପରେ ଦିଆଯାଇଥିବା ସାରଣୀକୁ ଲକ୍ଷ୍ୟ କଲେ ଜଣାଯିବ ଯେ ଉଦଜାନ ପରମାଣୁର ଗୋଟିଏ ଇଲେକ୍‌ଟ୍ରନ୍‌ ଓ ଗୋଟିଏ ପ୍ରୋଟୋନ୍‌ ଅଛି । ଏହା ହେଉଛି ଏକମାତ୍ର ପରମାଣୁ ଯାହାର ନିଉଟ୍ରନ୍‌ ନାହିଁ । ଏହା ହେଉଛି ପ୍ରକୃତିର ସରଳତମ ସୃଷ୍ଟି । ଏହାର କେନ୍ଦ୍ରରେ ଥିବା ପ୍ରୋଟୋନ୍‌ ହେଉଛି ଏହାର ନାଭିକ । ନାଭିକ ଚାରିପଟେ ଏକମାତ୍ର ଇଲେକ୍‌ଟ୍ରନ୍‌ ଘୂରୁଛି ।

ହିଲିୟମ୍‌ ପରମାଣୁର ଚିତ୍ରକୁ ଦେଖ । ପ୍ରତ୍ୟେକ ପରମାଣୁର ଦୁଇଟି ଇଲେକ୍‌ଟ୍ରନ୍‌, ଦୁଇଟି ପ୍ରୋଟୋନ୍‌ ଓ ଦୁଇଟି ନିଉଟ୍ରନ୍‌ ଅଛି । ଦୁଇଟିଯାକ ଇଲେକ୍‌ଟ୍ରନ୍‌ ନାଭିକଠାରୁ ସମାନ ଦୂରତାରେ ଏହା ଚାରିପଟେ ଘୂରୁଛି । ଏହି ଦୁଇଟି ଗୋଟିଏ ସେଲ୍‌ରେ ଅବସ୍ଥିତ ।




[ଚିତ୍ର-11: ହିଲିୟମ୍‌ ପରମାଣୁ]

ଲିଥିୟମ୍‌ ପରମାଣୁର 3ଟି ଇଲେକ୍‌ଟ୍ରନ୍‌, 3ଟି ପ୍ରୋଟୋନ୍‌ ଓ 4ଟି ନିଉଟ୍ରନ୍‌ ଅଛି । ହିଲିୟମ୍‌ ଅପେକ୍ଷା ଏହାର ଇଲେକ୍‌ଟ୍ରନ୍‌-ବିନ୍ୟାସ ଟିକିଏ ଅଲଗା । ହିଲିୟମ୍‌ ପରି ଦୁଇଟି ଇଲେକ୍‌ଟ୍ରନ୍‌ ପ୍ରଥମ ସେଲ୍‌ରେ ଘୂରୁଛନ୍ତି; ମାତ୍ର ତୃତୀୟ ଇଲେକ୍‌ଟ୍ରନ୍‌ଟି ନାଭିକଠାରୁ ଟିକିଏ ଦୂରରେ ଅନ୍ୟ ଗୋଟିଏ ସେଲ୍‌ରେ ଘୂରୁଛି । ପୁନଶ୍ଚ ଏହାର

ନାଭିକରେ ପ୍ରୋଟୋନ୍ ଓ ନିଉଟ୍ରନ୍ ସଂଖ୍ୟା ସମାନ ନୁହେଁ । ଏଥିରେ 3ଟି ପ୍ରୋଟୋନ୍ ଓ 4ଟି ନିଉଟ୍ରନ୍ ଅଛି ।



[ଚିତ୍ର-12: ଲିଥିୟମ୍ ପରମାଣୁ]

ନିମ୍ନରେ କାର୍ବନ୍ ଓ ଯବକ୍ଷାରଜାନ ପରମାଣୁର ପରମାଣୁ ସଂରଚନା ଦର୍ଶାଯାଇଛି । କାର୍ବନ୍‌ରେ 6ଟି ପ୍ରୋଟୋନ୍, 6ଟି ନିଉଟ୍ରନ୍ ଓ 6ଟି ଇଲେକ୍‌ଟ୍ରନ୍ ଅଛି । ଇଲେକ୍‌ଟ୍ରନ୍‌ଗୁଡିକ ମଧ୍ୟରୁ 2ଟି ପ୍ରଥମ ସେଲ୍‌ରେ ଓ 4ଟି ଦ୍ୱିତୀୟ ସେଲ୍‌ରେ ଅବସ୍ଥିତ ଅଛନ୍ତି । ସେହିପରି ଯବକ୍ଷାରଜାନର 7ଟି ପ୍ରୋଟୋନ୍, 7ଟି ନିଉଟ୍ରନ୍ ଓ 7ଟି ଇଲେକ୍‌ଟ୍ରନ୍ ଅଛି ଏବଂ ଇଲେକ୍‌ଟ୍ରନ୍‌ଗୁଡିକ ନାଭିକ ଚାରିପଟରେ ଦୁଇଟି ସେଲ୍‌ରେ ରହି ଘୂରୁଛନ୍ତି ।



[ଚିତ୍ର-13: କାର୍ବନ୍ ପରମାଣୁ]

ଏହିପରି ଭାବେ ପ୍ରତ୍ୟେକ ପରମାଣୁର ଅଲଗା ଅଲଗା ସଂଖ୍ୟକ ପ୍ରୋଟୋନ୍, ନିଉଟ୍ରନ୍ ଓ ଇଲେକ୍‌ଟ୍ରନ୍ ଅଛି ଏବଂ ଇଲେକ୍‌ଟ୍ରନ୍‌ଗୁଡିକ ବିଭିନ୍ନ କକ୍ଷରେ ନାଭିକ ଚାରିପଟେ ଘୂରୁଛନ୍ତି ।




[ଚିତ୍ର-14: ଯବକ୍ଷାରଜାନ ପରମାଣୁ]

ବର୍ତ୍ତମାନ ପରମାଣୁର ଗଠନ ସମ୍ପର୍କରେ ଆହୁରି ଅନେକ କଥା ଜଣାପଡିଲାଣି । ସେସବୁ ବିଚାରକୁ ନେଲେ ଏହା ଖୁବ୍ ଜଟିଳ ମନେ ହେବ । ଉଦାହରଣସ୍ୱରୂପ, ବୋହର୍‌ଙ୍କ ମଡ଼େଲ୍‌ରେ ଇଲେକ୍‌ଟ୍ରନ୍‌କୁ କଣିକା ବୋଲି ଧରାଯାଉଥିଲା । ଏହା ତରଙ୍ଗ ଆକାରରେ ରହିପାରେ ବୋଲି ବର୍ତ୍ତମାନ କୁହାଯାଉଛି । ଏଣୁ ସୂର୍ଯ୍ୟଙ୍କ ଚାରିପାଖେ ଗ୍ରହମାନଙ୍କ ଭଳି ନ ଘୂରି ନାଭିକ ଚାରିପାଖରେ ତାହା ବାଦଲ ଭଳି ଘେରି ରହିଥିବାର ମନେ କରାଯାଉଛି । ଏହାକୁ ଇଲେକଟ୍ରନ୍ ବାଦଲ (electron cloud) କୁହାଯାଉଛି । କ୍ୱାଣ୍ଟମ୍ ଅବଲମ୍ବନରେ ଏହି ନୂତନ ତତ୍ତ୍ୱ ପ୍ରକାଶ ପାଇଛି ।




[ଚିତ୍ର-15: ଇଲେକ୍ଟ୍ରନ୍ ବାଦଲ]

# ସମସ୍ଥାନିକ (Isotope)

କେତେକ ପରମାଣୁର ନାଭିକରେ ପ୍ରୋଟୋନ୍ ସଂଖ୍ୟା ସମାନ ଥାଏ, ମାତ୍ର ନିଉଟ୍ରନ୍ ସଂଖ୍ୟା ଅଲଗା ଥାଏ । ଏଗୁଡ଼ିକର ପ୍ରୋଟୋନ୍ ସଂଖ୍ୟା ସମାନ ଥିବାରୁ ପରମାଣବିକ ସଂଖ୍ୟା ସମାନ । ଏହି ପରମାଣୁଗୁଡ଼ିକୁ ସମସ୍ଥାନିକ ବା ଆଇସୋଟୋପ୍ କୁହାଯାଏ । ଅର୍ଥାତ୍ କୌଣସି ପରମାଣୁର ସମସ୍ଥାନିକଗୁଡ଼ିକର ପରମାଣବିକ ସଂଖ୍ୟା ହେଉଛି ସମାନ; ମାତ୍ର ପରମାଣବିକ ବସ୍ତୁତ୍ୱ ସଂଖ୍ୟା ହେଉଛି ଅଲଗା ।

ଉଦାହରଣଭାବେ ଉଦଜାନ ପରମାଣୁକୁ ଦେଖିବା । ପ୍ରକୃତିରେ ତିନି ପ୍ରକାର ଉଦଜାନ ପରମାଣୁ ଦେଖାଯାଏ । ତହିଁରୁ ମୁଖ୍ୟଟି ଗୋଟିଏ ପ୍ରୋଟୋନ୍ ଓ ଗୋଟିଏ ଇଲେକ୍ଟ୍ରନ୍‌ରେ ଗଢ଼ା । ଉଦଜାନ କହିଲେ ଆମେ ସାଧାରଣତଃ ଏହାକୁ ହିଁ ବୁଝିଥାଉ । ଗୋଟିଏ ପ୍ରୋଟୋନ୍‌ରେ ଗଢ଼ା ହୋଇଥିବାରୁ ଏହାକୁ 'ପ୍ରୋଟିୟମ୍' (protium) ମଧ୍ୟ କୁହାଯାଏ । ଅନ୍ୟ ଦୁଇ ପ୍ରକାର ଉଦଜାନ ମଧ୍ୟରୁ ଗୋଟିକରେ ଗୋଟିଏ ଇଲେକ୍ଟ୍ରନ୍ ଓ ଗୋଟିଏ ପ୍ରୋଟୋନ୍ ସହିତ ଗୋଟିଏ ନିଉଟ୍ରନ୍ ଥାଏ । ଏଣୁ ଏହାର ଓଜନ ସାଧାରଣ ଉଦଜାନର ପ୍ରାୟ ଦୁଇ ଗୁଣ । ସେଥିପାଇଁ ଏହାକୁ ଭାରି-ଉଦଜାନ ବା ଡ଼ିଉଟେରିୟମ୍ (deuterium) କୁହାଯାଏ । ସେହିପରି ତୃତୀୟ ପ୍ରକାର ଉଦଜାନରେ ଗୋଟିଏ ଇଲେକ୍ଟ୍ରନ୍, ଗୋଟିଏ ପ୍ରୋଟୋନ୍ ଓ ଦୁଇଟି ନିଉଟ୍ରନ୍ ଥିବାରୁ ଏହା ସାଧାରଣ ଉଦଜାନଠାରୁ ୩ଗୁଣ ଭାରି । ଅତଏବ ଏହା ହେଲା ଅତିଭାରି ଉଦଜାନ ବା ଟ୍ରିଟିୟମ୍ (tritium) । ବିଜ୍ଞାନ ପରିଭାଷାରେ ଏ ତିନିଙ୍କୁ ସମସ୍ଥାନିକ ବା ଆଇସୋଟୋପସ୍ (isotopes) କୁହାଯାଏ । ସେହିପରି କ୍ଲୋରିନ୍, ଅମ୍ଳଜାନ, କାର୍ବନ୍, ୟୁରାନିୟମ୍ ଇତ୍ୟାଦିର ମଧ୍ୟ ଏକାଧିକ ସମସ୍ଥାନିକ ରହିଛି । ପାରମାଣବିକ ସଂଖ୍ୟା ଗୋଟିଏ ହୋଇଥିବାରୁ ଏମାନଙ୍କୁ ପର୍ଯ୍ୟାୟ ସାରଣୀରେ ଗୋଟିଏ ସ୍ଥାନରେ ରଖାଯାଏ । ସେଥିପାଇଁ ସେମାନଙ୍କୁ ସମସ୍ଥାନିକ କୁହାଯାଏ । ସାରଣୀ-2 ରେ କେତେକ ପରମାଣୁର ସମସ୍ଥାନିକଙ୍କୁ ଦର୍ଶାଯାଇଛି ।

ସାରଣୀ-2: କେତେକ ପରମାଣୁର ସମସ୍ଥାନିକ

| କ୍ର. ସଂ. | ମୌଳିକର ନାମ | ସମସ୍ଥାନିକମାନଙ୍କ ନାମ | ପ୍ରୋଟୋନ୍ ସଂଖ୍ୟା | ନିଉଟ୍ରନ୍ ସଂଖ୍ୟା |
|---|---|---|---|---|
| 1. | ଉଦଜାନ | କ) ଉଦଜାନ ବା ପ୍ରୋଟିୟମ୍ | 1 | 0 |
| | | ଖ) ଭାରି ଉଦଜାନ ବା (ଡ଼ିଉଟେରିୟମ୍) | 1 | 1 |
| | | ଗ) ଅତିଭାରିଉଦଜାନ ବା (ଟ୍ରିଟିୟମ୍) | 1 | 2 |
| 2. | ହିଲିୟମ୍ | କ) ହିଲିୟମ୍-4 | 2 | 2 |
| | | ଖ) ହିଲିୟମ୍-3 | 2 | 1 |
| 3. | କାର୍ବନ୍ | କ) କାର୍ବନ୍-12 | 6 | 6 |
| | | ଖ) କାର୍ବନ୍-13 | 6 | 7 |
| 4. | ଅମ୍ଳଜାନ | କ) ଅମ୍ଳଜାନ-16 | 8 | 8 |
| | | ଖ) ଅମ୍ଳଜାନ-18 | 8 | 10 |
| | | ଗ) ଅମ୍ଳଜାନ-17 | 8 | 9 |
| 5. | ଗନ୍ଧକ | କ) ଗନ୍ଧକ-32 | 16 | 16 |
| | | ଖ) ଗନ୍ଧକ-34 | 16 | 18 |
| | | ଗ) ଗନ୍ଧକ-33 | 16 | 17 |
| 6. | କ୍ଲୋରିନ୍ | କ) କ୍ଲୋରିନ୍-35 | 17 | 18 |
| | | ଖ) କ୍ଲୋରିନ୍-37 | 17 | 20 |
| 7. | କ୍ରୋମିୟମ୍ | କ) କ୍ରୋମିୟମ୍-52 | 24 | 28 |
| | | ଖ) କ୍ରୋମିୟମ୍-53 | 24 | 29 |
| | | ଗ) କ୍ରୋମିୟମ୍-50 | 24 | 26 |
| | | ଘ) କ୍ରୋମିୟମ୍-54 | 24 | 30 |
| 8. | ଲୌହ | କ) ଲୌହ-56 | 26 | 30 |
| | | ଖ) ଲୌହ-54 | 26 | 28 |
| | | ଗ) ଲୌହ-57 | 26 | 31 |
| | | ଘ) ଲୌହ-58 | 26 | 32 |
| 9. | ୟୁରାନିୟମ୍ | କ) ୟୁରାନିୟମ୍-238 | 92 | 146 |
| | | ଖ) ୟୁରାନିୟମ୍-235 | 92 | 143 |

(ବି.ଦ୍ର.: ପ୍ରକୃତି କ୍ଷେତ୍ରରେ ମିଳୁଥିବା ପରିମାଣ ଅନୁସାରେ ସମସ୍ଥାନିକମାନଙ୍କୁ ସଜାଯାଇଛି)

ଏହା ବ୍ୟତୀତ ଆହୁରି ଅନେକ ସମସ୍ଥାନିକଯୁକ୍ତ ମୌଳିକମାନ ମଧ୍ୟ ଅଛନ୍ତି । ଉଦାହରଣସ୍ୱରୂପ, କାଲ୍‌ସିୟମ୍‌ର 40, 44, 42, 43, 48 ଓ 46 ପାରମାଣବିକ ବସ୍ତୁତ୍ୱ ସଂଖ୍ୟା ବିଶିଷ୍ଟ 6 ଗୋଟି ସମସ୍ଥାନିକ ଥିଲାବେଳେ କାଡ୍‌ମିୟମ୍‌ରେ 8 ଟି (114, 112, 110, 111, 113, 116, 106, ଓ 108 ପାରମାଣବିକ ବସ୍ତୁତ୍ୱ ସଂଖ୍ୟା ବିଶିଷ୍ଟ), ଟିଣର 10ଟି (120, 118, 116, 119, 117, 124, 122, 112, 114 ଓ 115 ପାରମାଣବିକ ବସ୍ତୁତ୍ୱ ସଂଖ୍ୟା ବିଶିଷ୍ଟ) ଏବଂ ପାରଦର 7ଟି (202, 200, 199, 201, 198, 204 ଓ 196 ପାରମାଣବିକ ବସ୍ତୁତ୍ୱ ବିଶିଷ୍ଟ) ସମସ୍ଥାନିକ ରହିଛନ୍ତି ।

ପ୍ରାକୃତିକ ଉଦଜାନରେ ସାଧାରଣ ଉଦଜାନ ହେଲା ଶତକଡା 99.984 ଭାଗ ଏବଂ ଭାରିଉଦଜାନ 0.016 ଭାଗ । ଏଥିରେ ଅତି-ଭାରିଉଦଜାନର ପରିମାଣ ଅତି ନଗଣ୍ୟ, ତାହା $10^{10}$ ଭାଗରେ ପ୍ରାୟ ଏକଭାଗ । ତେବେ ଏହାର ତେଜସ୍କ୍ରିୟଗୁଣ ରହିଛି । ବିବିଧ ତେଜସ୍କ୍ରିୟ ପ୍ରତିକ୍ରିୟାରେ ଏହା ଅଧିକ ପରିମାଣରେ ଉତ୍ପନ୍ନ ହୁଏ ।

ସେହିପରି ୟୁରାନିୟମ୍‌ର ଦୁଇଟି ମୁଖ୍ୟ ସମସ୍ଥାନିକ ହେଉଛି ୟୁରାନିୟମ୍-238 ଏବଂ ୟୁରାନିୟମ୍-235 । ଏହାର ଅନ୍ୟ କେତେକ ସମସ୍ଥାନିକ ଥିଲେ ସୁଦ୍ଧା ସେଗୁଡିକର ଅର୍ଦ୍ଧଆୟୁଷ ବହୁତ କମ୍ ହୋଇଥିବାରୁ ପ୍ରକୃତିରେ କେବଳ ଏହି ଦୁଇଟି ସମସ୍ଥାନିକ ଉପଲବ୍ଧ ହୋଇଥାଏ । ମାତ୍ର ଏହି ଦୁଇଟିର ପରିମାଣରେ ବହୁତ ପାର୍ଥକ୍ୟ ରହିଛି । କୌଣସି ଏକ ୟୁରାନିୟମ୍ ନମୁନାର ଅଧିକାଂଶ ଭାଗ ୟୁରାନିୟମ୍-238 ଅଧିକାର କରିଥାଏ । ଏହାର ଭାଗ 99.3 ପ୍ରତିଶତ ହୋଇଥିବା ବେଳେ ୟୁରାନିୟମ୍-235 ର ପରିମାଣ ହେଉଛି ମାତ୍ର 0.7 ପ୍ରତିଶତ । ସୂଚନାଯୋଗ୍ୟ ଯେ ନିୟନ୍ତ୍ରିତ ଉପାୟରେ ଆଣବିକ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରିବା ପାଇଁ କେବଳ ୟୁରାନିୟମ୍-235 ଦରକାର ହୋଇଥାଏ । ମାତ୍ର ପ୍ରକୃତିରେ ଏହାର ପରିମାଣ ବହୁତ କମ୍ ଥିବାରୁ ଆଣବିକ ରିଆକ୍ଟରରେ ବ୍ୟବହାର ପୂର୍ବରୁ ୟୁରାନିୟମ୍‌କୁ ସମୃଦ୍ଧିକରଣ (enrichment) କରି ଏଥିରେ ୟୁରାନିୟମ୍-235 ର ପରିମାଣ 3 ରୁ 4 ପ୍ରତିଶତକୁ ଅଣାଯାଇଥାଏ । ଆଣବିକ ବୋମା ନିର୍ମାଣ ପାଇଁ ୟୁରାନିୟମ୍‌କୁ ସମୃଦ୍ଧିକରଣ କରି କରି 90 ପ୍ରତିଶତ ୟୁରାନିୟମ୍-235 ପ୍ରସ୍ତୁତ କରାଯାଏ ।

# ପରମାଣୁର ପରିପ୍ରକାଶ

ବୈଜ୍ଞାନିକମାନେ ବିଭିନ୍ନ ପରମାଣୁକୁ ସଂକ୍ଷେପରେ ଲେଖିବା ପାଇଁ ବିଭିନ୍ନ ପ୍ରକାର ଚିହ୍ନ ବ୍ୟବହାର କରିଥାଆନ୍ତି । ବିଶେଷତଃ ରାସାୟନିକ ପ୍ରତିକ୍ରିୟାକୁ ପ୍ରକାଶ କରିବାରେ ଏହା ସୁବିଧାଜନକ ହୋଇଥାଏ । ସାଧାରଣତଃ ପରମାଣୁଗୁଡ଼ିକର ଲାଟିନ୍ କିମ୍ବା ଇଂରାଜୀ ନାମ ଅନୁସାରେ ଚିହ୍ନ ଦିଆଯାଇଛି । ଉଦାହରଣସ୍ୱରୂପ, ଉଦଜାନ (ଇଂରାଜୀ ନାମ Hydrogen)କୁ H, ସୋଡିୟମ୍ (ଲାଟିନ୍ ନାମ Natrium) କୁ Na, କାଲସିୟମ୍ (ଇଂରାଜୀ ନାମ Calcium) କୁ Ca ଏବଂ ସୁନା (ଲାଟିନ୍ ନାମ Aurum) କୁ Au ଭାବେ ଚିହ୍ନିତ କରାଯାଇଛି ।

ଏହା ବ୍ୟତୀତ ପରମାଣବିକ ସଂଖ୍ୟାକୁ Z ଏବଂ ପରମାଣବିକ ବସ୍ତୁତ୍ୱ ସଂଖ୍ୟାକୁ A ଭାବରେ ପ୍ରକାଶ କରାଯାଇଛି । ଏଣୁ ନାଭିକରେ ଥିବା ନିଉଟ୍ରନ୍ ସଂଖ୍ୟା = A - Z । ପରମାଣୁ ଚିହ୍ନର ବାମପଟ ତଳେ ପରମାଣବିକ ସଂଖ୍ୟା ଏବଂ ଡ଼ାହାଣ ପଟ ଉପରେ ବସ୍ତୁତ୍ୱ ସଂଖ୍ୟା ଲେଖାଯାଏ । ଏହାକୁ ନିମ୍ନ ଭାବରେ ପ୍ରକାଶ କରାଯାଇଥାଏ ।

$$_{Z}X^{A}$$

ଏଠାରେ × ହେଉଛି ପରମାଣୁ ।

ଉଦାହରଣସ୍ୱରୂପ, ସାଧାରଣ କାର୍ବନ୍ ପରମାଣୁକୁ ନିମ୍ନ ଭାବରେ ଲେଖାଯାଏ ।

$$_{6}C^{12}$$

ଏଥିରୁ ଆମେ କାର୍ବନ୍‌ର ପ୍ରୋଟୋନ୍ ସଂଖ୍ୟା (୬) ଏବଂ ନିଉଟ୍ରନ୍ ସଂଖ୍ୟା (12-6 = ୬) ଜାଣିପାରିବା । ସେହିପରି କାର୍ବନ୍‌ର ଏକ ସମସ୍ଥାନିକ ନିମ୍ନରେ ଦିଆଗଲା ।

$$_{6}C^{14}$$

ଏହି କ୍ଷେତ୍ରରେ ପ୍ରୋଟୋନ୍ ସଂଖ୍ୟା ହେଉଛି 6 ଏବଂ ନିଉଟ୍ରନ୍ ସଂଖ୍ୟା ହେଉଛି 8 । ଏହାକୁ ମଧ୍ୟ କାର୍ବନ୍-14 ଆକାରରେ ଲେଖାଯାଇଥାଏ ।

# ପରମାଣୁର ଆକାର

ପରମାଣୁଗୁଡିକ ଏତେ ଛୋଟ ଯେ ଆମେ ସେଗୁଡିକୁ ଖାଲି ଆଖିରେ ଦେଖିପାରିବା ନାହିଁ । ଏହା ଏତେ କ୍ଷୁଦ୍ର ଯେ ଆମେ ତାହା ସହଜରେ କଳ୍ପନା ମଧ୍ୟ କରିପାରିବା ନାହିଁ । ଏକ ଇଞ୍ଚ ଦୈର୍ଘ୍ୟକୁ 100 ନିୟୁତ ଭାଗ କଲେ ଯାହା ହେବ, ଏହା ପ୍ରାୟ ସେତିକି । ବୁଢିଆଣୀ ସୂତା କେତେ ସରୁ । ତା'ର ବ୍ୟାସ ହେଉଛି 0.000001 ମିଲିମିଟର । ପରମାଣୁ ହେଉଛି ତା'ଠାରୁ କ୍ଷୁଦ୍ର । ଏହାକୁ ସାଧାରଣ ଆଲୋକୀୟ ଅଣୁବୀକ୍ଷଣ ଯନ୍ତ୍ରରେ ମଧ୍ୟ ଦେଖିହୁଏ ନାହିଁ । 1981 ମସିହାରେ ଗୋଟିଏ ବିଶେଷ ପ୍ରକାର ଅଣୁବୀକ୍ଷଣ ଯନ୍ତ୍ରର ବିକାଶ କରାଗଲା, ଯାହା ସାହାଯ୍ୟରେ ପରମାଣୁକୁ ଦେଖି ହେଲା । ଏହି ଯନ୍ତ୍ରର ନାମ ହେଉଛି କ୍ରମବୀକ୍ଷଣ ଟନେଲ୍ ଅଣୁବୀକ୍ଷଣ ଯନ୍ତ୍ର (Scanning tunneling microscope ବା STM) ।

ପରମାଣୁ ଏବଂ ଏହାର ବିଭିନ୍ନ କଣିକାର ଆକାର ସମ୍ବନ୍ଧୀୟ ଏକ ଧାରଣା ନିମ୍ନରେ ଦିଆଯାଇଛି । ଏଥିରେ ପରମାଣୁ ଓ ଅନ୍ୟ କଣିକାଗୁଡିକର ଆନୁମାନିକ ବ୍ୟାସ ଦିଆଯାଇଛି ।

ପରମାଣୁ ବ୍ୟାସ = $1 \times 10^{-10}$ ମିଟର

ନାଭିକ ବ୍ୟାସ = $1 \times 10^{-14}$ ମିଟର

ନିଉଟ୍ରନ୍ କିମ୍ବା ପ୍ରୋଟୋନ୍ ବ୍ୟାସ = $1 \times 10^{-15}$ ମିଟର

ଇଲେକ୍ଟ୍ରନ୍ ବ୍ୟାସ = $1 \times 10^{-18}$ ମିଟର (ଏହା ସଠିକ୍ ଭାବେ ଜଣାନାହିଁ) ।

# ପରମାଣୁର ବସ୍ତୁତ୍ୱ

ପରମାଣୁର ଅଧିକାଂଶ ବସ୍ତୁତ୍ୱ ଏହାର ନାଭିକରେ ଥିବା ପ୍ରୋଟୋନ୍ ଓ ନିଉଟ୍ରନ୍‌ରୁ ଆସିଥାଏ । ଇଟାଲିର ରସାୟନ ବିଜ୍ଞାନୀ ଆମାଦେଓ ଆଭୋଗାଡ୍ରୋ ଯବକ୍ଷାରଜାନ, ଅମ୍ଳଜାନ, ଉଦଜାନ ଓ କ୍ଲୋରିନ୍ ଗ୍ୟାସ୍‌କୁ ନେଇ କିଛି ପରୀକ୍ଷା କରୁଥିଲେ । ସେ ଲକ୍ଷ୍ୟ କଲେ ଯେ, ଯେତେବେଳେ ଏହି ଗ୍ୟାସ୍‌ଗୁଡିକର ତାପମାତ୍ରା ଓ ଚାପମାନ ସମାନ, ଏଗୁଡିକ ଏକ ନିର୍ଦ୍ଦିଷ୍ଟ ଆୟତନ ଅନୁପାତରେ ଏକାଠି ମିଶି ଯୌଗିକ ପଦାର୍ଥ ସୃଷ୍ଟି କରିଥାଆନ୍ତି । ଉଦାହରଣସ୍ୱରୂପ,

(କ) ଏକ ଲିଟର ଯବକ୍ଷାରଜାନ ତିନି ଲିଟର ଉଦଜାନ ସହ ମିଶି ଏମୋନିଆ ($NH_3$) ଗଠନ କରିଥାଆନ୍ତି ।

(ଖ) ଏକ ଲିଟର ଉଦଜାନ ଏକ ଲିଟର କ୍ଲୋରିନ୍ ସହ ମିଶି ହାଇଡ୍ରୋଜେନ୍ କ୍ଲୋରାଇଡ୍ ବା ଲବଣାମ୍ଳ (HCL) ଗଠନ କରିଥାଆନ୍ତି ।



[ଚିତ୍ର-17:
ଆମାଦେଓ ଆଭୋଗାଡ୍ରୋ]

ଆଭୋଗାଡ୍ରୋ ପ୍ରକାଶ କଲେ ଯେ ସମାନ ତାପମାତ୍ରା ଓ ଚାପମାନରେ ସମାନ ଆୟତନ ବିଶିଷ୍ଟ ଗ୍ୟାସ୍‌ଗୁଡିକରେ ସମାନ ସଂଖ୍ୟକ ଅଣୁ ଅଛି । ଏଣୁ ସମାନ ଆୟତନର ଗ୍ୟାସ୍‌କୁ ଓଜନ କରି ସେ ପରମାଣବିକ ବସ୍ତୁତ୍ୱର ଅନୁପାତକୁ ଜାଣିପାରିଲେ । ଉଦାହରଣସ୍ୱରୂପ, ଏକ ଲିଟର ଅମ୍ଳଜାନର ଓଜନ ହେଉଛି ଏକ ଲିଟର ଉଦଜାନ ଓଜନର 16 ଗୁଣ । ଏଣୁ ଅମ୍ଳଜାନର ଗୋଟିଏ ପରମାଣୁର ବସ୍ତୁତ୍ୱ ନିଶ୍ଚିତ ଭାବେ ଉଦଜାନର ଗୋଟିଏ ପରମାଣୁର ବସ୍ତୁତ୍ୱର 16 ଗୁଣ ହେବ । ଏହି ପ୍ରକାର ବିଶ୍ଳେଷଣ ଦ୍ୱାରା ପରମାଣୁଗୁଡିକର ଗୋଟିଏ ଆପେକ୍ଷିକ ବସ୍ତୁତ୍ୱ ସ୍କେଲ୍ ବାହାରିଲା । ଏଥିରେ ସମସ୍ତ

ପରମାଣୁକୁ କାର୍ବନ୍ ପରମାଣୁ ସହ ତୁଳନା କରାଗଲା । ଥରେ ଆପେକ୍ଷିକ ବସ୍ତୁତ୍ୱ ସ୍କେଲ୍ ପ୍ରସ୍ତୁତ ହୋଇଯିବା ପରେ ପରବର୍ତ୍ତୀ ପରୀକ୍ଷାଗୁଡିକରୁ କୌଣସି ପଦାର୍ଥରେ ଥିବା ପରମାଣୁ ସଂଖ୍ୟାକୁ ପଦାର୍ଥର ଗ୍ରାମ୍‌ରେ ଓଜନ ସହ ସମ୍ପର୍କ ସ୍ଥାପନ କରିହେଲା । ଏଥିରୁ ପରମାଣବିକ ବସ୍ତୁତ୍ୱ ଏକକ (atomic mass unit ବା a.m.u) ବାହାର କରାଗଲା । ଏ.ଏମ୍.ୟୁ. କୁ ମଧ୍ୟ ଡ଼ାଲଟନ୍ କୁହାଯାଏ । ଗୋଟିଏ କାର୍ବନ୍ ପରମାଣୁର ବସ୍ତୁତ୍ୱର ବାର ଭାଗରୁ ଏକ ଭାଗକୁ ଏକ ଏ.ଏମ୍.ୟୁ. ବା ଡ଼ାଲଟନ୍ ଭାବେ ନିଆଯାଇଛି । ଏହା $1.66 \times 10^{-24}$ ଗ୍ରାମ୍ ସହ ସମାନ ।

ବିଭିନ୍ନ କଣିକାର ବସ୍ତୁତ୍ୱ ନିମ୍ନରେ ପ୍ରଦାନ କରାଗଲା ।

(କ) ଇଲେକ୍‌ଟ୍ରନ୍‌ର ବସ୍ତୁତ୍ୱ = $9.11 \times 10^{-31}$ କି.ଗ୍ରା. । ଏହା ହେଉଛି ସବୁଠାରୁ ହାଲୁକା କଣିକା ।

(ଖ) ପ୍ରୋଟୋନ୍‌ର ବସ୍ତୁତ୍ୱ = $1.6726 \times 10^{-27}$ କି.ଗ୍ରା. । ଏହାର ବସ୍ତୁତ୍ୱ ହେଉଛି ଇଲେକ୍‌ଟ୍ରନ୍ ବସ୍ତୁତ୍ୱର 1836 ଗୁଣ ।

(ଗ) ନିଉଟ୍ରନ୍‌ର ବସ୍ତୁତ୍ୱ = $1.6929 \times 10^{-27}$ କି.ଗ୍ରା. । ଏହାର ବସ୍ତୁତ୍ୱ ହେଉଛି ଇଲେକ୍‌ଟ୍ରନ୍ ବସ୍ତୁତ୍ୱର 1839 ଗୁଣ ।

# ମୌଳିକ ପଦାର୍ଥ ଓ ଯୌଗିକ ପଦାର୍ଥ

ଯେଉଁ ବସ୍ତୁ ସମାନ ପ୍ରକାରର ପରମାଣୁରୁ ଗଠିତ, ତାକୁ ମୌଳିକ ପଦାର୍ଥ (element) କୁହାଯାଏ । ମନେକର 118 ପ୍ରକାରର ପରମାଣୁ ଅଛି । ତାହାହେଲେ ମୋଟ ଉପରେ କେତୋଟି ମୌଳିକ ପଦାର୍ଥ ଅଛି ? ମୌଳିକ ପଦାର୍ଥର ସଂଖ୍ୟା ମଧ୍ୟ ସେହି 118 ହେବ । ପରମାଣୁର ନାମ ଅନୁସାରେ ମୌଳିକ ପଦାର୍ଥର ସମାନ ନାମ ମଧ୍ୟ ଦିଆଯାଇଛି । ଏଣୁ ଆମେ କହି ପାରିବା ଯେ ଉଦଜାନ, ହିଲିୟମ୍, ଅମ୍ଳଜାନ, କାର୍ବନ୍, ତମ୍ବା ଆଦି ହେଉଛି ମୌଳିକ ପଦାର୍ଥ ।

ଅନ୍ୟ ପକ୍ଷରେ ଯେଉଁ ବସ୍ତୁ ଏକରୁ ଅଧିକ ଅଲଗା ପ୍ରକାରର ପରମାଣୁରୁ ଗଠିତ, ତାକୁ ଯୌଗିକ ପଦାର୍ଥ (compound) କୁହାଯାଏ । ଉଦାହରଣସ୍ୱରୂପ, ଦୁଇଟି ଉଦଜାନ ପରମାଣୁ ଗୋଟିଏ ଅମ୍ଳଜାନ ପରମାଣୁ ସହ ମିଶି ହାଇଡ୍ରୋଜେନ୍ ଅକ୍ସାଇଡ୍ ଯୌଗିକ ପଦାର୍ଥ ସୃଷ୍ଟି କରୁଛି । ଏହା ସାଧାରଣରେ ଜଳ ଭାବେ ଜଣା । ସେହିପରି ଆମେ ଖାଉଥିବା ଲୁଣର ରାସାୟନିକ ନାମ ହେଉଛି ସୋଡିୟମ୍ କ୍ଲୋରାଇଡ୍ । ଏହା ଗୋଟିଏ ଯୌଗିକ ପଦାର୍ଥ । ସୋଡିୟମ୍ ଓ କ୍ଲୋରିନ୍ ପରମାଣୁ ଦ୍ୱୟରେ ସଂଯୋଗରେ ଏହା ଗଠିତ ହୋଇଛି ।

ବିଭିନ୍ନ ପ୍ରକାର ମୌଳିକ ପଦାର୍ଥର ସଂଯୋଗରୁ କେତୋଟି ଯୌଗିକ ପଦାର୍ଥ ଗଠନ ହୋଇପାରିବ, ତାକୁ କଳ୍ପନା କରିପାରିବା କି ? ଅସୀମ ସଂଖ୍ୟକ ଯୌଗିକ ପଦାର୍ଥ ଅଛି । ବିଶ୍ୱ ବ୍ରହ୍ମାଣ୍ଡରେ ଯେଉଁସବୁ ସଜୀବ ଓ ନିର୍ଜୀବ ବସ୍ତୁ ଆମେ ଦେଖୁଛେ, ତାହା ଏହିସବୁ ଯୌଗିକ ପଦାର୍ଥରୁ ଗଠିତ ହୋଇଛି ।

# ମୌଳିକ ପଦାର୍ଥର ପର୍ଯ୍ୟାୟ ସାରଣୀ

ମୌଳିକ ପଦାର୍ଥର ପର୍ଯ୍ୟାୟ ସାରଣୀ ହେଉଛି ଗୋଟିଏ ସାରଣୀ ଯେଉଁଥିରେ ସମସ୍ତ ମୌଳିକ ପଦାର୍ଥର ଚିହ୍ନ, ପରମାଣବିକ ସଂଖ୍ୟା ଏବଂ ପରମାଣବିକ ବସ୍ତୁତ୍ୱ ଦର୍ଶାଯାଇଥାଏ । ଏଥିରେ ମୌଳିକ ପଦାର୍ଥଗୁଡ଼ିକୁ ବିଭିନ୍ନ ଧାଡ଼ି ଓ ସ୍ତମ୍ଭରେ ଏପରି ଭାବେ ସଜ୍ଜା ହୋଇ ରଖାଯାଇଛି ଯେ ସମାନ ପ୍ରକୃତିର ମୌଳିକ ପଦାର୍ଥଗୁଡ଼ିକ ସମାନ ବ୍ୟବଧାନରେ ବା ପର୍ଯ୍ୟାୟରେ ଦେଖା ଦେଇଥାଏ ।

ପର୍ଯ୍ୟାୟ ସାରଣୀ 7ଟି ଧାଡ଼ି ଓ 18ଟି ସ୍ତମ୍ଭରେ ବିଭକ୍ତ । ଗୋଟିଏ ଧାଡ଼ି ବା ପର୍ଯ୍ୟାୟରେ ଥିବା ମୌଳିକ ପଦାର୍ଥଗୁଡ଼ିକର ପ୍ରକୃତି ବାମରୁ ଡ଼ାହାଣ ଆଡ଼କୁ ଧୀରେ ଧୀରେ

| | | | | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|---|---|---|
| 1 H | | | | | | | | | | | | | | | | | 2 He |
| 3 Li | 4 Be | | | | | | | | | | | 5 B | 6 C | 7 N | 8 O | 9 F | 10 Ne |
| 11 Na | 12 Mg | | | | | | | | | | | 13 Al | 14 Si | 15 P | 16 S | 17 Cl | 18 Ar |
| 19 K | 20 Ca | 21 Sc | 22 Ti | 23 V | 24 Cr | 25 Mn | 26 Fe | 27 Co | 28 Ni | 29 Cu | 30 Zn | 31 Ga | 32 Ge | 33 As | 34 Se | 35 Br | 36 Kr |
| 37 Rb | 38 Sr | 39 Y | 40 Zr | 41 Nb | 42 Mo | 43 Tc | 44 Ru | 45 Rh | 46 Pd | 47 Ag | 48 Cd | 49 In | 50 Sn | 51 Sb | 52 Te | 53 I | 54 Xe |
| 55 Cs | 56 Ba | | 72 Hf | 73 Ta | 74 W | 75 Re | 76 Os | 77 Ir | 78 Pt | 79 Au | 80 Hg | 81 Tl | 82 Pb | 83 Bi | 84 Po | 85 At | 86 Rn |
| 87 Fr | 88 Ra | | 104 Rf | 105 Db | 106 Sg | 107 Bh | 108 Hs | 109 Mt | 110 Ds | 111 Rg | 112 Cn | 113 Uut | 114 Fl | 115 Uup | 116 Lv | 117 Uus | 118 Uuo |
| | | | 57 La | 58 Ce | 59 Pr | 60 Nd | 61 Pm | 62 Sm | 63 Eu | 64 Gd | 65 Tb | 66 Dy | 67 Ho | 68 Er | 69 Tm | 70 Yb | 71 Lu |
| | | | 89 Ac | 90 Th | 91 Pa | 92 U | 93 Np | 94 Pu | 95 Am | 96 Cm | 97 Bk | 98 Cf | 99 Es | 100 Fm | 101 Md | 102 No | 103 Lr |

[ଚିତ୍ର-18: ମୌଳିକ ପଦାର୍ଥର ପର୍ଯ୍ୟାୟ ସାରଣୀ]

ବଦଳିଥାଏ । ପ୍ରତ୍ୟେକ ସ୍ତମ୍ଭରେ ଥିବା ମୌଳିକ ପଦାର୍ଥଗୁଡ଼ିକୁ ଗ୍ରୁପ୍ (group) କୁହାଯାଏ । ଗୋଟିଏ ସ୍ତମ୍ଭରେ ଥିବା ସମସ୍ତ ମୌଳିକ ପଦାର୍ଥର ସମାନ ରାସାୟନିକ ପ୍ରକୃତି ଥାଏ । ପ୍ରତ୍ୟେକ ଧାଡ଼ିରେ ମୌଳିକ ପଦାର୍ଥଗୁଡ଼ିକ ବାମରୁ ଡ଼ାହାଣକୁ ସେମାନଙ୍କର ପରମାଣବିକ ସଂଖ୍ୟା ଅନୁଯାୟୀ ରହିଥାଏ । ପୁନଶ୍ଚ ଧାଡ଼ିଗୁଡ଼ିକରେ ଉପରୁ ତଳ ଆଡ଼କୁ ଗଲେ ମୌଳିକ ପଦାର୍ଥଗୁଡ଼ିକର ପରମାଣୁରେ ଥିବା ସେଲ୍ ସଂଖ୍ୟା କ୍ରମଶଃ ବଢ଼ିଥାଏ । ଉଦାହରଣସ୍ୱରୂପ, ପ୍ରଥମ ଧାଡ଼ିରେ ଥିବା ମୌଳିକ

ପଦାର୍ଥଗୁଡିକର ଗୋଟିଏ ସେଲ୍, ଦ୍ୱିତୀୟ ଧାଡିରେ ଥିବା ମୌଳିକ ପଦାର୍ଥଗୁଡିକର ଦୁଇଟି ସେଲ୍ ଇତ୍ୟାଦି ।

ରୁଷିଆର ରସାୟନ ବିଜ୍ଞାନୀ ଡ଼ିମିତ୍ରି ଇଭାନୋଚିଭ୍ ମେଣ୍ଡେଲିଭ୍ 1869 ମସିହାରେ ପ୍ରଥମେ ମୌଳିକ ପଦାର୍ଥଗୁଡିକର ପର୍ଯ୍ୟାୟ ସାରଣୀ ପ୍ରସ୍ତୁତ କରିଥିଲେ । ସେତେବେଳକୁ 63ଟି ମୌଳିକ ପଦାର୍ଥ ଜଣାଥିଲା । ସେ ପରମାଣବିକ ବସ୍ତୁତ୍ୱ ଅନୁଯାୟୀ ସାନରୁ ବଡ଼କ୍ରମେ ମୌଳିକ ପଦାର୍ଥଗୁଡିକୁ ଲେଖିଲେ । ସେ ସାରଣୀକୁ କେତେଗୁଡିଏ ଧାଡିରେ ଏପରି ଭାବରେ ଭାଗ କଲେ ଯେ ମୌଳିକ ପଦାର୍ଥଗୁଡିକର ଅବସ୍ଥିତିରେ ଗୋଟିଏ ଶୈଳୀ (pattern) ମିଳିଲା । ସମାନ ରାସାୟନିକ ପ୍ରକୃତି ଥିବା ମୌଳିକ ପଦାର୍ଥଗୁଡିକ ଗୋଟିଏ ସ୍ତମ୍ଭରେ ଆସିଲା । ଏହାର ପ୍ରତ୍ୟେକ ଧାଡିକୁ ପର୍ଯ୍ୟାୟ କୁହାଗଲା । ପର୍ଯ୍ୟାୟ ସାରଣୀକୁ ଦେଖି ବୈଜ୍ଞାନିକମାନେ ପ୍ରଥମ କରି ମୌଳିକ ପଦାର୍ଥଗୁଡିକ ମଧ୍ୟରେ ଥିବା ରାସାୟନିକ ସମ୍ପର୍କକୁ ଜାଣିପାରିଲେ ।



[ଚିତ୍ର-19: ଡିମିତ୍ରି ମେଣ୍ଡେଲିଭ୍]

ମେଣ୍ଡେଲିଭ୍‌ଙ୍କ ପର୍ଯ୍ୟାୟ ସାରଣୀରେ କିଛି ଘର (cell) ଖାଲି ପଡିଥିଲା । କାରଣ ସେତେବେଳେ ସମସ୍ତ ମୌଳିକ ପଦାର୍ଥ ଆବିଷ୍କୃତ ହୋଇନଥିଲା । ମେଣ୍ଡେଲିଭ୍ ସେତେବେଳେ ଆବିଷ୍କୃତ ହୋଇନଥିବା ତିନୋଟି ମୌଳିକ ପଦାର୍ଥର ପୂର୍ବାନୁମାନ କରିଥିଲେ ଏବଂ ପର୍ଯ୍ୟାୟ ସାରଣୀରେ ସେଗୁଡିକ ପାଇଁ ସ୍ଥାନ ନିରୂପଣ କରିବା ସଙ୍ଗେ ସଙ୍ଗେ ସେଗୁଡିକର ପ୍ରକୃତି ନିର୍ଣ୍ଣୟ କରିଥିଲେ । ଏହି ପଦାର୍ଥ ତିନୋଟି ହେଉଛି ଜର୍ମାନିୟମ୍, ଗାଲିୟମ୍ ଓ ସ୍କାଣ୍ଡିୟମ୍ । ପର୍ଯ୍ୟାୟ ସାରଣୀରେ ଏଗୁଡିକ ଯଥାକ୍ରମେ ସିଲିକନ୍, ଆଲୁମିନିୟମ୍ ଓ ବୋରୋନ୍ ପରେ ଆସୁଥିବାରୁ ସେ ଏଗୁଡିକରେ ନାମ ଯଥାକ୍ରମେ ଏକା-ସିଲିକନ୍, ଏକା-ଆଲୁମିନିୟମ୍ ଏବଂ ଏକା-ବୋରୋନ୍ ରଖିଥିଲେ ।

ମେଣ୍ଡେଲିଭ୍‌ଙ୍କ ପର୍ଯ୍ୟାୟ ସାରଣୀରେ ନୋବେଲ ବା ନିଷ୍କ୍ରିୟ ଗ୍ୟାସ୍ ନଥିଲା । ଏଗୁଡିକ ପରେ ଆବିଷ୍କୃତ ହେଲା । ସ୍କଟଲାଣ୍ଡର ରାସାୟନିବିତ୍ ଉଇଲିୟମ୍ ରାମ୍‌ସେ ଏଗୁଡିକୁ ଆବିଷ୍କାର କରିଥିଲେ ଏବଂ ପର୍ଯ୍ୟାୟ ସାରଣୀରେ ଗୋଟିଏ ନୂଆ ଗ୍ରୁପ୍ ୦ (ଶୂନ) ସୃଷ୍ଟି କରି ଏଗୁଡିକୁ ଯୋଗ କଲେ । ଫଳରେ ପର୍ଯ୍ୟାୟ ସାରଣୀର ମୂଳ ଧାରଣା ଅପରିବର୍ତ୍ତିତ ରହିଲା ।

ଏହାପରେ ଜଣାପଡିଲା ଯେ ପରମାଣବିକ ବସ୍ତୁତ୍ୱ ଅନୁଯାୟୀ ମୌଳିକ ପଦାର୍ଥଗୁଡ଼ିକୁ ସଜାଇଲେ କିଛି ଅସୁବିଧା ହେଉଛି । ଉଦାହରଣସ୍ୱରୂପ, ପରମାଣବିକ ବସ୍ତୁତ୍ୱ ଅନୁଯାୟୀ ଲିଥିୟମ୍ ଓ ସୋଡିୟମ୍ ସହ ଗୋଟିଏ ଶ୍ରେଣୀରେ ଆରଗନ୍ ରହିବା କଥା । ମାତ୍ର ଆରଗନ୍ ଗ୍ୟାସ୍ ହୋଇଥିବା ବେଳେ ଲିଥିୟମ୍ ଓ ସୋଡିୟମ୍ ହେଉଛି କଠିନ ପଦାର୍ଥ । ପୁନଶ୍ଚ ଏହି ଦୁଇଟି ଅତି ପ୍ରତିକ୍ରିୟାଶୀଳ ହୋଇଥିବାବେଳେ ଆରଗନ୍ ହେଉଛି ପ୍ରାୟ ପ୍ରତିକ୍ରିୟାହୀନ । 1913 ମସିହାରେ ଇଂରେଜୀ ପଦାର୍ଥ ବିଜ୍ଞାନୀ ହେନେରି ମୋସ୍‌ଲେ ଏହାର ସମାଧାନ ପାଇଁ ଉପାୟ ବାହାର କଲେ । ସେ ଦର୍ଶାଇଲେ ଯେ ମୌଳିକ ପଦାର୍ଥଗୁଡିକର ରାସାୟନିକ ପ୍ରକୃତି ଏହାର ପରମାଣିକ ବସ୍ତୁତ୍ୱ ଅପେକ୍ଷା ପରମାଣବିକ ସଂଖ୍ୟା ସହିତ ଅଧିକ ଭାବରେ ସମ୍ପର୍କ ରହିଛି ।


[ଚିତ୍ର-20:ଉଇଲିୟମ୍ ରାମ୍‌ସେ]

ଆମେ ପୂର୍ବରୁ ଜାଣିଛେ ଯେ ମୌଳିକ ପଦାର୍ଥର ରାସାୟନିକ ପ୍ରକୃତି ଏହାର ଇଲେକ୍‌ଟ୍ରନ୍ ଉପରେ ନିର୍ଭର କରେ । ପୁନଶ୍ଚ ଆମେ ଜାଣିଛେ ଯେ ଗୋଟିଏ ପରମାଣୁରେ ପ୍ରୋଟୋନ୍ ଓ ନିଉଟ୍ରନ୍ ସଂଖ୍ୟା ହେଉଛି ସମାନ । ଏଣୁ ପରମାଣବିକ ସଂଖ୍ୟା (ଅନ୍ୟ ଅର୍ଥରେ ପ୍ରୋଟୋନ୍ କିମ୍ବା ଇଲେକ୍‌ଟ୍ରନ୍ ସଂଖ୍ୟା) ଅନୁସାରେ ମୌଳିକ ପଦାର୍ଥଗୁଡ଼ିକୁ ପର୍ଯ୍ୟାୟ ସାରଣୀରେ ସଜାଇବା ହେଉଛି ଯଥାର୍ଥ । ଏହାପର ଠାରୁ ପର୍ଯ୍ୟାୟ ସାରଣୀକୁ ପୁନର୍ଗଠିତ କରି ମୌଳିକ ପଦାର୍ଥଗୁଡ଼ିକୁ ସେମାନଙ୍କର ପରମାଣବିକ ସଂଖ୍ୟା ଅନୁଯାୟୀ ସଜାଇ ଲେଖାଗଲା ।

ବର୍ତ୍ତମାନ ସୁଦ୍ଧା ଆବିଷ୍କୃତ 118ଟି ମୌଳିକ ପଦାର୍ଥକୁ ପର୍ଯ୍ୟାୟ ସାରଣୀରେ ରଖାଯାଇଛି । ଏଥିମଧ୍ୟରୁ ପ୍ରଥମ ୨୪ଟି ମୌଳିକ ପଦାର୍ଥ ପ୍ରକୃତିରେ ଉପଲବ୍ଧ ଏବଂ ଅବଶିଷ୍ଟ ସବୁ ପରୀକ୍ଷାଗାରରେ ସାଂଶ୍ଳେଷିତ କରାଯାଇଛି । ପୁନଶ୍ଚ ପ୍ରକୃତିରେ ମିଳୁଥିବା କେତେକ ମୌଳିକ ପଦାର୍ଥର ତେଜସ୍କ୍ରିୟ ସମସ୍ଥାନିକକୁ କୃତ୍ରିମ ଉପାୟରେ ପରୀକ୍ଷାଗାରରେ ପ୍ରସ୍ତୁତ କରାଯାଇଛି ।

# ରାସାୟନିକ ପ୍ରତିକ୍ରିୟା

ପରମାଣୁଗୁଡିକର ସଂଯୋଗ ହେଉଛି ରାସାୟନିକ ପ୍ରତିକ୍ରିୟା (chemical reaction) । ଏଥିରେ ପରମାଣୁର ବାହ୍ୟ ସେଲ୍‌ରେ ଥିବା ଇଲେକ୍‌ଟ୍ରନ୍‌ଗୁଡିକ ମୁଖ୍ୟ ଭୂମିକା ନେଇଥାଆନ୍ତି । କାରଣ ଅଧିକାଂଶ ପରମାଣୁର ବାହ୍ୟ ସେଲ୍‌ଟି ଅସମ୍ପୂର୍ଣ୍ଣ ଥାଏ; ଅର୍ଥାତ୍ ଏଥିରେ ସର୍ବାଧିକ ଯେତିକି ଇଲେକ୍ଟ୍ରନ୍ ରହିବାର କ୍ଷମତା ଅଛି, ସେତିକି ନଥାଏ । ଯେତେବେଳେ ଏହିପରି ଦୁଇଟି ବା ତତୋଧିକ ପରମାଣୁ ମଧ୍ୟରେ ପ୍ରତିକ୍ରିୟା ଘଟେ, ବାହ୍ୟ ସେଲ୍‌ରେ ଥିବା ଇଲେକ୍‌ଟ୍ରନ୍‌ଗୁଡିକ ଏମିତି ସଜାଇ ହୋଇ ରହନ୍ତି ଯାହା ଫଳରେ ପରମାଣୁର ବାହ୍ୟ ସେଲ୍ ସମ୍ପୂର୍ଣ୍ଣ ହୋଇଯାଏ । ଏହା ତିନୋଟି ଉପାୟରେ ହୋଇଥାଏ ।

(କ) ପରମାଣୁଗୁଡିକର ବାହ୍ୟ ସେଲ୍‌ରେ ଥିବା କେତୋଟି ଇଲେକ୍‌ଟ୍ରନ୍‌କୁ ପରସ୍ପର ଭାଗ କରନ୍ତି ।

(ଖ) ଗୋଟିଏ ପରମାଣୁର ବାହ୍ୟ ସେଲ୍‌ରେ ଥିବା ଅଧିକ ଇଲେକ୍‌ଟ୍ରନ୍‌କୁ ଅନ୍ୟ ଗୋଟିଏ ପରମାଣୁ ଗ୍ରହଣ କରିନେବ ।

(ଗ) ପରମାଣୁର ବାହ୍ୟ ସେଲ୍‌ରେ ଥିବା ସମସ୍ତ ଇଲେକ୍‌ଟ୍ରନ୍‌ଗୁଡିକୁ ଅନ୍ୟ ପରମାଣୁକୁ ଦେଇଦେବା ।

ଯେତେବେଳେ ପରମାଣୁର ବାହ୍ୟ ସେଲ୍ ସମ୍ପୂର୍ଣ୍ଣ ହୋଇଯାଏ, ତାକୁ ସ୍ଥିର (stable) କୁହାଯାଏ । କେତୋଟି ଉଦାହରଣଦ୍ୱାରା ଏହାକୁ ବୁଝିବା ।

**1. ଉଦଜାନ ଅଣୁ**

ଉଦଜାନ ପରମାଣୁର ଗୋଟିଏ ସେଲ୍ ଅଛି ଏବଂ ଏଥିରେ ଗୋଟିଏ ଇଲେକ୍‌ଟ୍ରନ୍ ଅଛି । ଏହି ସେଲ୍ ସମ୍ପୂର୍ଣ୍ଣ



[ଚିତ୍ର-21:ଦୁଇଟି ଉଦଜାନ ପରମାଣୁ]

ହେବାପାଇଁ ଏହାକୁ ଆଉ ଗୋଟିଏ ଇଲେକ୍‌ଟ୍ରନ୍ ଦରକାର । ମନେକର ଏହା ଅନ୍ୟ ଗୋଟିଏ ଉଦଜାନ ପରମାଣୁ ସଂସ୍ପର୍ଶରେ ଆସିଲା । ସେହି ପରମାଣୁର ବାହ୍ୟ ସେଲ୍‌ରେ ମଧ୍ୟ ଗୋଟିଏ ଇଲେକ୍‌ଟ୍ରନ୍ ଅଛି । ତାହାହେଲେ କ'ଣ ହେବ ?

ଏହା ସ୍ୱାଭାବିକ ହେବ ଯେ ଦୁଇଟି ଯାକ ପରମାଣୁ ସେମାନଙ୍କର ଇଲେକ୍‌ଟ୍ରନ୍‌କୁ ପରସ୍ପର ମଧ୍ୟରେ ବାଣ୍ଟି ଏକାଠି ହୋଇଯିବେ । ଏହା ଫଳରେ ପ୍ରତ୍ୟେକ ପରମାଣୁର ସେଲ୍‌ରେ ଦୁଇଟି ଇଲେକ୍‌ଟ୍ରନ୍ ରହିବ (ଚିତ୍ର 22 ଦେଖ) । ଏହିପରି ଭାବେ ପରମାଣୁଗୁଡିକର ସଂଯୋଗ ବା ଗ୍ରୁପିଙ୍ଗ୍‌କୁ ଅଣୁ (molecule) କୁହାଯାଏ । ଉଦାହରଣସ୍ୱରୂପ, ଉଦଜାନ ଗ୍ୟାସ୍ ଉଦଜାନ ଅଣୁରୁ ଗଠିତ ହୋଇଛି । ଗୋଟିଏ ଉଦଜାନ ଅଣୁରେ ଦୁଇଟି ଉଦଜାନ ପରମାଣୁ ଅଛି । ଯେହେତୁ ଉଦଜାନ ପରମାଣୁର ବାହ୍ୟ ସେଲ୍ ସମ୍ପୂର୍ଣ୍ଣ ନୁହେଁ, ଏହା ସ୍ଥିର ନୁହେଁ । ଫଳରେ ଏହା ଅନ୍ୟ ଉଦଜାନ ପରମାଣୁ ସହ ମିଶି ଉଦଜାନ ଅଣୁ ସୃଷ୍ଟି କରି ସ୍ଥିର ହୋଇଥାଏ । ଏଥିପାଇଁ ପ୍ରକୃତିରେ ଆମେ ଉଦଜାନ ପରମାଣୁ ପାଇ ନ ଥାଉ, କେବେଳ ଉଦଜାନ ଅଣୁ ପାଇଥାଉ । ଏହିପ୍ରକାର ରାସାୟନିକ ବନ୍ଧ (chemical bond)କୁ ସହଯୋଜୀ ବନ୍ଧ (covalent bond) କୁହାଯାଏ । ଏହିପ୍ରକାର ବନ୍ଧରେ ଦୁଇଟି ପରମାଣୁ ପରସ୍ପରର ଇଲେକ୍‌ଟ୍ରନ୍‌କୁ ଭାଗ କରନ୍ତି ।



ଚିତ୍ର 22 – ଉଦଜାନ ଅଣୁ

## (2) ଜଳ ଅଣୁ

ଉଦଜାନ ଓ ଅମ୍ଳଜାନର ରାସାୟନିକ ପ୍ରକ୍ରିୟା ହେଉଛି ଟିକିଏ ଜଟିଳ । ଅମ୍ଳଜାନ ପରମାଣୁରେ ୮ଟି ଇଲେକ୍‌ଟ୍ରନ୍ ଅଛି । ଏଥିମଧ୍ୟରୁ ପ୍ରଥମ ସେଲ୍‌ରେ 2ଟି ଏବଂ ଦ୍ୱିତୀୟ ତଥା ବାହ୍ୟ ସେଲ୍‌ରେ 6 ଟି ଇଲେକ୍‌ଟ୍ରନ୍ ଅଛି । ବାହ୍ୟ ସେଲ୍‌ଟି ସମ୍ପୂର୍ଣ୍ଣ ହେବାପାଇଁ ଏହାର ଆଉ 2ଟି ଇଲେକ୍‌ଟ୍ରନ୍ ଦରକାର । ପୂର୍ବ ଉଦାହରଣରୁ

ଆମେ ଜାଣିଛେ ଯେ ଉଦଜାନ ପରମାଣୁର ସେଲ୍ ସମ୍ପୂର୍ଣ୍ଣ ହେବାପାଇଁ ଅଧିକ ଗୋଟିଏ ଇଲେକ୍‌ଟ୍ରନ୍ ଦରକାର । ଏଣୁ କେତେକ ନିର୍ଦ୍ଦିଷ୍ଟ ଅନୁକୂଳ ପରିସ୍ଥିତିରେ ଉଦଜାନ ଓ ଅମ୍ଳଜାନ ପରମାଣୁଗୁଡିକୁ ଏକାଠି କଲେ କ'ଣ ହେବ ?

ପ୍ରତ୍ୟେକ ଅମ୍ଳଜାନ ପରମାଣୁ ସହଜରେ ଦୁଇଟି ଉଦଜାନ ପରମାଣୁ ସହ ମିଶିଯିବ ଯାହା ଫଳରେ ତିନୋଟିଯାକ ପରମାଣୁର ବାହ୍ୟ ସେଲ୍ ସମ୍ପୂର୍ଣ୍ଣ ହୋଇପାରିବ । ଏହି ପ୍ରତିକ୍ରିୟାରୁ ଆମେ ହାଇଡ୍ରୋଜେନ୍ ଅକ୍‌ସାଇଡ୍ ବା ଜଳର ଅଣୁ ପାଇବା (ଚିତ୍ର 23 ଦେଖ) ।




ଚିତ୍ର 23– ଜଳ ଅଣୁ

---

## (3) ସୋଡିୟମ୍ କ୍ଲୋରାଇଡ୍

ଆମ ଖାଇବା ଲୁଣର ରାସାୟନିକ ନାମ ହେଉଛି ସୋଡିୟମ୍ କ୍ଲୋରାଇଡ୍ । ଏହାର ଗୋଟିଏ ଅଣୁ ଗୋଟିଏ ସୋଡିୟମ୍ ପରମାଣୁ ଓ ଗୋଟିଏ କ୍ଲୋରିନ୍ ପରମାଣୁରୁ ଗଠିତ । ଗୋଟିଏ ସୋଡିୟମ୍ ପରମାଣୁର 11ଟି ଇଲେକ୍‌ଟ୍ରନ୍ ଅଛି ଏବଂ ଫଳରେ ଏହା ତିନୋଟି ସେଲ୍‌ରେ ଅଛି । ପ୍ରଥମ ସେଲ୍‌ରେ 2ଟି, ଦ୍ୱିତୀୟ ସେଲ୍‌ରେ 8ଟି ଏବଂ ତୃତୀୟ ତଥା ଶେଷ ସେଲ୍‌ରେ ମାତ୍ର ଗୋଟିଏ ଇଲେକ୍‌ଟ୍ରନ୍

ଅଛି । ଗୋଟିଏ କ୍ଲୋରିନ୍ ପରମାଣୁର 17ଟି ଇଲେକ୍ଟ୍ରନ୍ ଅଛି । ପ୍ରଥମ ସେଲ୍‌ରେ 2ଟି, ଦ୍ୱିତୀୟ ସେଲ୍‌ରେ 8ଟି ଏବଂ ତୃତୀୟ ତଥା ଶେଷ ସେଲ୍‌ରେ 7ଟି ଇଲେକ୍ଟ୍ରନ୍ ଅଛି ।

ମନେକର ସୋଡିୟମ୍ ଓ କ୍ଲୋରିନ୍ ପରମାଣୁର ରାସାୟନିକ ପ୍ରକ୍ରିୟା କରିବା । ସ୍ଥିରତା ପାଇବା ପାଇଁ ସୋଡିୟମ୍ ପରମାଣୁକୁ ଦୁଇଟି ଜିନିଷରୁ ଗୋଟିଏକୁ ବାଛିବାକୁ ପଡିବ । ଏହାର ଶେଷ ସେଲ୍‌ରୁ ଗୋଟିଏ ଇଲେକ୍ଟ୍ରନ୍ ହରାଇବା କିମ୍ୱା 7ଟି ଇଲେକ୍ଟ୍ରନ୍ ଗ୍ରହଣ କରି ଶେଷ ସେଲ୍‌କୁ ସମ୍ପୂର୍ଣ୍ଣ କରିବା । କେଉଁଟି ସହଜ ? ନିଶ୍ଚିତଭାବେ ଗୋଟିଏ ଇଲେକ୍ଟ୍ରନ୍ ହରାଇବା ହେଉଛି ସହଜ ପ୍ରକ୍ରିୟା । ଗୋଟିଏ ଇଲେକ୍ଟ୍ରନ୍ ହରାଇଲେ ପରମାଣୁର ମୋଟ ପ୍ରୋଟୋନ୍ ସଂଖ୍ୟା ମୋଟ ଇଲେକ୍ଟ୍ରନ୍ ସଂଖ୍ୟାଠାରୁ ଅଧିକ ହେବ । ଫଳରେ ସାମଗ୍ରିକ ଭାବେ ପରମାଣୁକୁ ଧନାତ୍ମକ ଆୟନ୍ ବା କାଟାୟନ୍ (cation) କୁହାଯାଏ ।

ଅପରପକ୍ଷରେ କ୍ଲୋରିନ୍ ପରମାଣୁର ସ୍ଥିରତା ଆଣିବା ପାଇଁ 7ଟି ଇଲେକ୍ଟ୍ରନ୍ ହରାଇବା ଅପେକ୍ଷା ଗୋଟିଏ ଇଲେକ୍ଟ୍ରନ୍ ଗ୍ରହଣ କରିବା ହେଉଛି ସହଜ ଉପାୟ । ସ୍ୱାଭାବିକ ଭାବେ ସୋଡିୟମ୍ ପରମାଣୁ ପରିତ୍ୟାଗ କରୁଥିବା ଇଲେକ୍ଟ୍ରନ୍‌କୁ ଏହା ସହଜରେ ଗ୍ରହଣ କରିନେବ । କ୍ଲୋରିନ୍ ପରମାଣୁ ଗୋଟିଏ ଅଧିକ ଇଲେକ୍ଟ୍ରନ୍ ଗ୍ରହଣ କରୁଥିବାରୁ ଏହା ସାମଗ୍ରିକ ଭାବେ ଋଣାତ୍ମକ ଚାର୍ଜ ହୋଇଥାଏ । ଏହି ପ୍ରକାର ପରମାଣୁକୁ ଋଣାତ୍ମକ ଆୟନ୍ ବା ଆନାୟନ୍ (anion) କୁହାଯାଏ ।

ବର୍ତ୍ତମାନ ଆମେ ଦେଖିଲେ ଯେ ସୋଡିୟମ୍ ଓ କ୍ଲୋରିନ୍ ପରମାଣୁ ପରସ୍ପରର ନିକଟତର ହେବା ପରେ କ୍ଲୋରିନ୍ ପରମାଣୁ ସୋଡିୟମ୍ ପରମାଣୁର ଗୋଟିଏ ଇଲେକ୍ଟ୍ରନ୍ ଗ୍ରହଣ କରିନେଲା । ଏହି ପ୍ରକ୍ରିୟାରେ ଦୁଇଟି ଯାକ ପରମାଣୁରେ ସ୍ଥିରତା ଆସିଲା । ମାତ୍ର ଗୋଟିଏ ଧନାତ୍ମକ ଆୟନ୍ ହୋଇଥିବା ବେଳେ ଅନ୍ୟଟି ଋଣାତ୍ମକ ଆୟନ୍ ହୋଇଗଲା । ଆମେ ଜାଣୁ ଯେ ଦୁଇଟି ବିପରୀତ ଚାର୍ଜ ପରସ୍ପରକୁ ଆକର୍ଷଣ କରେ ଏବଂ ସମାନ ଚାର୍ଜ ପରସ୍ପରକୁ ବିକର୍ଷଣ କରେ । ଏହି କ୍ଷେତ୍ରରେ ଦୁଇଟି ବିପରୀତ ଚାର୍ଜ ପରସ୍ପର ପ୍ରତି ଆକର୍ଷିତ ହେବେ ଏବଂ ଏହି ବୈଦ୍ୟୁତିକ ବଳଦ୍ୱାରା ଉଭୟ ବାନ୍ଧିହୋଇ ଏକାଠି ରହିବେ । ଏହା ଫଳରେ ସୋଡିୟମ୍ ଓ କ୍ଲୋରିନ୍ ପରମାଣୁରୁ ସୋଡିୟମ୍ କ୍ଲୋରାଇଡ୍ ଅଣୁ ଗଠିତ ହେଲା । ଏହିପ୍ରକାର

ବନ୍ଧକୁ ଆୟନୀୟ ବନ୍ଧ (ionic bond) ବା ବିଦ୍ୟୁତ୍-ଯୋଜି ବନ୍ଧ କୁହାଯାଏ ।

(4) ମିଥେନ୍




[ଚିତ୍ର-26: ସୋଡ଼ିୟମ୍ ଆୟନ୍ ଓ କ୍ଲୋରିନ୍ ଆୟନ୍]

---

ଗୋଟିଏ କାର୍ବନ୍ ପରମାଣୁ ଓ 4ଟି ଉଦଜାନ ପରମାଣୁର ସଂଯୋଗରେ ମିଥେନ୍ ଅଣୁ ସୃଷ୍ଟି ହୋଇଥାଏ । କାର୍ବନ୍‌ର ବାହ୍ୟ ସେଲ୍‌ରେ 4ଟି ଏବଂ ଉଦଜାନର ବାହ୍ୟ ସେଲ୍‌ରେ ଗୋଟିଏ ଇଲେକ୍‌ଟ୍ରନ୍ ଅଛି । କାର୍ବନ୍ ପରମାଣୁର ସ୍ଥିରତା ପାଇଁ ଏହା ଆଉ 4ଟି ଇଲେକ୍‌ଟ୍ରନ୍ ଦରକାର କରିଥାଏ ଏବଂ ସ୍ଥିରତା ପାଇଁ ଉଦଜାନ




[ଚିତ୍ର-27: ଚାରିଟି ଉଦଜାନ ପରମାଣୁ]




[ଚିତ୍ର-28: କାର୍ବନ୍ ପରମାଣୁ]

---

ଗୋଟିଏ ଇଲେକ୍‌ଟ୍ରନ୍ ଦରକାର କରିଥାଏ । ଏଣୁ ଗୋଟିଏ କାର୍ବନ ପରମାଣୁ ଚାରିଟି ଉଦଜାନ ପରମାଣୁ ସହ ମିଶି ମିଥେନ୍ ଅଣୁ ସୃଷ୍ଟି କରିଥାଏ (ଚିତ୍ର 29 ଦେଖ) । ଏହାକୁ $CH_4$ ଭାବେ ଲେଖାଯାଏ । ଏହା ମଧ ତଳଚିତ୍ରରେ ଡ଼ାହାଣ ପଟେ ଦେଖାଯାଇଥିବା ଭଳି ଲେଖାଯାଏ ।




[ଚିତ୍ର-29: ମିଥେନ୍ ଅଣୁ]

## (5) ଲବଣାମ୍ଳ

ଲବଣାମ୍ଳ ହେଉଛି ହାଇଡ୍ରାଜେନ୍ କ୍ଲୋରାଇଡ୍ (HCL) । ଗୋଟିଏ ଉଦଜାନ ଓ ଗୋଟିଏ କ୍ଲୋରିନ୍ ପରମାଣୁ ମିଶି ସହଯୋଜୀ ବନ୍ଧରେ ଏହା ସୃଷ୍ଟି ହୋଇଛି । ନିମ୍ନରେ ଏହାର ଚିତ୍ର ଦିଆଗଲା ।



[ଚିତ୍ର-30: ଲବଣାମ୍ଳ ଅଣୁ]

## (6) ଅମ୍ଳଜାନ

ଅମ୍ଳଜାନ ପରମାଣୁର ବାହ୍ୟ ସେଲ୍‌ରେ ଛଅଟି ଇଲେକ୍‌ଟ୍ରନ୍ ଅଛି । ଏଣୁ ଦୁଇଟି ଅମ୍ଳଜାନ ପରମାଣୁ ପରସ୍ପରର ନିକଟତର ହେଲେ ସ୍ଥିରତା ପାଇଁ ପ୍ରତ୍ୟେକ



[ଚିତ୍ର-31: ଅମ୍ଳଜାନ ପରମାଣୁ]

ଅଧିକ ଦୁଇଟି ଇଲେକ୍‌ଟ୍ରନ୍ ଦରକାର କରିବେ । ପ୍ରତ୍ୟେକ ପରମାଣୁର ଦୁଇଟି ଇଲେକ୍‌ଟ୍ରନ୍‌କୁ ଅନ୍ୟ ପରମାଣୁ ଭାଗ କରି ଏହା ସମ୍ଭବ ହୋଇପାରିବ । ଏହାକୁ ଦ୍ୱୈତବନ୍ଧ (double bond) କୁହାଯାଏ (ଚିତ୍ର 32 ଦେଖ) ।



[ଚିତ୍ର-32: ଅମ୍ଳଜାନ ଅଣୁ]

## (7) ଯବକ୍ଷାରଜାନ ଅଣୁ

ଯବକ୍ଷାରଜାନ ପରମାଣୁର ବାହ୍ୟ ସେଲ୍‌ରେ 5ଟି ଇଲେକ୍‌ଟ୍ରନ୍ ଅଛି । ଏଣୁ ଦୁଇଟି ଯବକ୍ଷାରଜାନ ପରମାଣୁ ପରସ୍ପର ସହିତ ତିନୋଟି ଇଲେକ୍‌ଟ୍ରନ୍ ଭାଗ କରି ଯବକ୍ଷାରଜାନ ଅଣୁ ସୃଷ୍ଟି କରିଥାଆନ୍ତି (ଚିତ୍ର 33 ଦେଖ) । ଏହାକୁ ତ୍ରି-ବନ୍ଧ




[ଚିତ୍ର-33: ଯବକ୍ଷାରଜାନ ଅଣୁ]

(triple bond) କୁହାଯାଏ ।

ସୂଚନାଯୋଗ୍ୟ ଯେ ଯେଉଁ ପରମାଣୁ ବାହ୍ୟ ସେଲ୍ ସମ୍ପୂର୍ଣ୍ଣ ଥାଏ, ତାହା ରାସାୟନିକ ଭାବେ ପ୍ରାୟ ନିଷ୍କ୍ରିୟ ଥାଏ । ଏହି ପରମାଣୁଗୁଡିକ ହେଉଛି ହିଲିୟମ୍,




[ଚିତ୍ର-34: ଅଙ୍ଗାରକାମ୍ଳ ଅଣୁ]

ନିଅନ୍, କ୍ରିପଟନ୍, ଜେନନ୍ ଏବଂ ରେଡ଼ନ୍ ।

## (୪) ଅଙ୍ଗାରକାମ୍ଳ ଅଣୁ

ଗୋଟିଏ କାର୍ବନ୍ ପରମାଣୁ ଓ ଦୁଇଟି ଅମ୍ଳଜାନ ପରମାଣୁକୁ ନେଇ ଅଙ୍ଗାରକାମ୍ଳ ଅଣୁ ସୃଷ୍ଟି ହୋଇଛି । କାର୍ବନ୍‌ର ବାହ୍ୟ ସେଲ୍‌ରେ 4ଟି ଇଲେକ୍‌ଟ୍ରନ୍ ଅଛି । ଏହା ଦୁଇଟି ଅମ୍ଳଜାନର ବାହ୍ୟ ସେଲ୍‌ରେ ଥିବା 2ଟି ଇଲେକ୍‌ଟ୍ରନ୍ ସହ ଦ୍ୱୈତ ବନ୍ଧରେ ଆବଦ୍ଧ ହୋଇଥାଏ ।

# ରାସାୟନିକ ସମୀକରଣ

ଆମେ ପୂର୍ବରୁ ଜାଣିଛେ ଯେ ଦୁଇଟି ଉଦଜାନ ପରମାଣୁ ଏବଂ ଗୋଟିଏ ଅମ୍ଳଜାନ ପରମାଣୁ ମିଶିଲେ ଗୋଟିଏ ଜଳ ଅଣୁ ସୃଷ୍ଟି ହୁଏ । ମାତ୍ର ପ୍ରକୃତିରେ ଉଦଜାନ ଓ ଅମ୍ଳଜାନ ପରମାଣୁ ଅବସ୍ଥାରେ ନାହିଁ; ଏହା ଅଣୁ ଅବସ୍ଥାରେ ରହିଥାଏ । ଏଣୁ ଉଦଜାନ ଓ ଅମ୍ଳଜାନ ଅଣୁ ମିଶି ଜଳ ସୃଷ୍ଟି କରିଥାଆନ୍ତି । ଏହାକୁ ଗୋଟିଏ ରାସାୟନିକ ସମୀକରଣ (chemical equation) ଆକାରରେ ପ୍ରକାଶ କରାଯାଇଥାଏ । ଉଦଜାନ ଓ ଅମ୍ଳଜାନ ସମୀକରଣକୁ ନିମ୍ନରେ । ଦେଖାଗଲା ।




[ଚିତ୍ର-35: ଅସନ୍ତୁଳିତ ସମୀକରଣ]

---

ଉପରେ ଦର୍ଶାଯାଇଥିବା ସମୀକରଣଟି ପୂରାପୂରି ଠିକ୍ ନୁହେଁ । କାରଣ ରାସାୟନିକ ସମୀକରଣର ଗୋଟିଏ ବଡ଼ ଆବଶ୍ୟକତା ହେଉଛି ଯେ ତୀର ଚିହ୍ନର ବାମପଟେ ଥିବା ପରମାଣୁ ସଂଖ୍ୟା ଏହାର ଡ଼ାହାଣପଟେ ଥିବା ପରମାଣୁ ସଂଖ୍ୟା ସହ ସମାନ ହେବ । ଏହାକୁ 'ସନ୍ତୁଳନ' (balanced) ରାସାୟନିକ ସମୀକରଣ କୁହାଯାଏ । ଉପର ସମୀକରଣରେ ବାମପଟେ 4ଟି ପରମାଣୁ ଥିବାବେଳେ ଡ଼ାହାଣପଟେ 3ଟି ପରମାଣୁ ଅଛି । ଏଣୁ ଏହା ସନ୍ତୁଳନ ନୁହେଁ । ଏହାର ସଠିକ୍ ସମୀକରଣ ହେଉଛି,

$$2H_2 + O_2 \rightarrow 2H_2O$$

ଚିତ୍ର-୨୬ରେ ଏହାକୁ ଦର୍ଶାଯାଇଛି ।




[ଚିତ୍ର-୨୬: ଜଳର ରାସାୟନିକ ସମୀକରଣ]

---

ତୀର ଚିହ୍ନରେ ବାମପଟେ ଥିବା ଅଣୁଗୁଡିକୁ ପ୍ରତିକାରକ (reactant) ଏବଂ ଡ଼ାହାଣ ପଟେ ଥିବା ଅଣୁଗୁଡିକୁ ଉତ୍ପାଦ (product) କୁହାଯାଏ ।

ଅଧିକାଂଶ ରାସାୟନିକ ପ୍ରତିକ୍ରିୟା ହେଉଛି ପ୍ରତ୍ୟାବର୍ତ୍ତୀ (reversible) । ସମୀକରଣରେ ତୀର ଚିହ୍ନ ପ୍ରତ୍ୟାବର୍ତ୍ତୀକୁ ସୂଚାଇଥାଏ ।

$$CO_2 + H_2O \rightarrow H_2CO_3$$

ଉପର ପ୍ରତିକ୍ରିୟାରେ ଅଙ୍ଗାରକାମ୍ଳ ($CO_2$)ର ପରିପୃକ୍ତ ଅବସ୍ଥା (Concentration) ଅଧିକ ହେଲେ କାର୍ବୋନିକ୍ ଅମ୍ଳ ($H_2CO_3$) ଜମା ହୋଇଯାଏ । ଅଙ୍ଗାରକାମ୍ଳର ପରିପୃକ୍ତ ଅବସ୍ଥା ଅଧିକ ହେଲେ ଦ୍ରୁତ ପ୍ରତିକ୍ରିୟା ଘଟିଥାଏ । ଅଙ୍ଗାରକାମ୍ଳର ପରିପୃକ୍ତ ଅବସ୍ଥା କମିଗଲେ ପ୍ରତିକ୍ରିୟା ବାମ ଆଡ଼କୁ ହୁଏ; ଅର୍ଥାତ୍ କାର୍ବୋନିକ୍ ଅମ୍ଳ ଭାଙ୍ଗିଯାଇ ଅଙ୍ଗାରକାମ୍ଳ ଓ ଜଳ ଗଠିତ ହୁଏ ।

# ପ୍ରତିବସ୍ତୁ

ପ୍ରତିବସ୍ତୁ ହେଉଛି ବସ୍ତୁର ବିପରୀତ ରୂପ । ଏହାର ପରମାଣୁର ନାଭିକରେ ଥିବା ପ୍ରୋଟୋନ୍ ହେଉଛି ଋଣାତ୍ମକ ଓ ଇଲେକ୍‌ଟ୍ରନ୍‌ଗୁଡ଼ିକ ହେଉଛି ଧନାତ୍ମକ । ଏଣୁ ପ୍ରତିବସ୍ତୁର ପରମାଣୁରେ ଧନାତ୍ମକ କଣିକାଗୁଡ଼ିକ ଋଣାତ୍ମକ ନାଭିକ ଚାରିପାଖରେ ଘୂରି ବୁଲନ୍ତି । ଏହି ଧନାତ୍ମକ ଇଲେକ୍‌ଟ୍ରନ୍‌କୁ ପ୍ରତିଇଲେକ୍‌ଟ୍ରନ୍ ବା ପଜିଟ୍ରନ୍ ନାମ ଦିଆଯାଇଛି । ବିଯୁକ୍ତ ଚାର୍ଜ ବହନ କରୁଥିବା ପ୍ରୋଟୋନ୍ ହେଉଛି ପ୍ରତି-ପ୍ରୋଟୋନ୍ ।




[ଚିତ୍ର-37: ଉଦଜାନ ଓ ପ୍ରତି-ଉଦଜାନର ପରମାଣବିକ ଗଠନ]

---

ପ୍ରତିବସ୍ତୁର ଧାରଣା ପ୍ରଥମେ ବ୍ରିଟିଶ୍ ବୈଜ୍ଞାନିକ ପଲ୍ ଡ଼ିରାକ୍ 1928 ମସିହାରେ ପ୍ରଦାନ କରିଥିଲେ । ବିଜ୍ଞାନର ଦୁଇଟି ପ୍ରମୁଖ ତଥ୍ୟ ଆଇନ୍‌ଷ୍ଟାଇନ୍‌ଙ୍କ ଆପେକ୍ଷିକ ତଥ୍ୟ ଓ କ୍ୱାଣ୍ଟମ୍ ତଥ୍ୟକୁ ବ୍ୟବହାର କରି ସେ ଏପରି ଏକ ସମୀକରଣରେ ଉପନୀତ ହେଲେ, ଯେଉଁଥିରେ ସେ ଋଣାତ୍ମକ ବସ୍ତୁତ୍ୱ ଓ ଋଣାତ୍ମକ

ଶକ୍ତି ପାଇଲେ । ଏହାକୁ ବୁଝାଇବାକୁ ଯାଇ ସେ ଧନାତ୍ମକ ଇଲେକ୍‌ଟ୍ରନ୍ ବା ପ୍ରତି-ଇଲେକ୍‌ଟ୍ରନ୍ ଓ ଋଣାତ୍ମକ ପ୍ରୋଟୋନ୍‌ର ଅବସ୍ଥିତି ବିଷୟରେ ସୂଚନା ଦେଲେ । ଏହା ହିଁ ପ୍ରତିବସ୍ତୁର ପ୍ରଥମ କଳ୍ପନା । ଏହି ଯୁଗାନ୍ତକାରୀ ଭବିଷ୍ୟତବାଣୀ ପାଇଁ 1933 ମସିହାରେ ତାଙ୍କୁ ପଦାର୍ଥବିଜ୍ଞାନରେ ନୋବେଲ୍ ପୁରସ୍କାରରେ ସମ୍ମାନିତ କରାଯାଇଥିଲା ।

1932 ମସିହାରେ ଆମେରିକାର କାଲିଫର୍ଣ୍ଣିଆ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍‌ନୋଲୋଜିର ଅଧ୍ୟାପକ କାର୍ଲ ଡ଼େଭିଡ୍ ଏଣ୍ଡରସନ୍ ଓ ପାଟ୍ରିକ୍ ବ୍ଲାକେଟ୍ ବିଶ୍ୱ ରଶ୍ମି (cosmic ray) ରୁ ପ୍ରତି-ଇଲେକ୍‌ଟ୍ରନ୍‌ର ଆବିଷ୍କାର କଲେ । ଏଣ୍ଡରସନ୍ ଏହାର ନାମ 'ପଜିଟ୍ରନ୍' ଦେଲେ । ଏହି ଆବିଷ୍କାର ପାଇଁ ଏଣ୍ଡରସନ୍ 1936 ମସିହାରେ ନୋବେଲ ପୁରସ୍କାର ପାଇଲେ । କେତେକ କୃତ୍ରିମ ତେଜସ୍କ୍ରିୟ ବସ୍ତୁ ଯଥା- ସୋଡିୟମ୍-22 ଓ ତମ୍ବା-64ର ବିକିରଣରୁ ମଧ୍ୟ ପଜିଟ୍ରନ୍‌ର ସନ୍ଧାନ ମିଳିଲା ।

ପଜିଟ୍ରନ୍ ଆବିଷ୍କାରର 23 ବର୍ଷ ପରେ ପ୍ରତି-ପ୍ରୋଟୋନ୍‌ର ଆବିଷ୍କାର ହେଲା । କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟରେ କଣିକାତ୍ୱରକ (particle accelerator) ରେ ଗୋଟିଏ ପରୀକ୍ଷା କଲାବେଳେ ଏହାର ସନ୍ଧାନ ମିଳିଲା । ବର୍ତ୍ତମାନ ଗବେଷଣାଗାରରେ କଣିକାତ୍ୱରକରେ ଅତି ସହଜରେ ପ୍ରତି-ପ୍ରୋଟୋନ୍ ସୃଷ୍ଟି କରାଯାଇପାରୁଛି । ପ୍ରୋଟୋନ୍‌କୁ ଗୋଟିଏ ବୈଦ୍ୟୁତିକ ଓ ଚୁମ୍ବକୀୟ କ୍ଷେତ୍ରରେ ତ୍ୱରଣ କରି ଏହାର ତ୍ୱରଣ ଶକ୍ତିକୁ ବୃଦ୍ଧି କରାଯାଇଥାଏ । ଏହାପରେ ଏହାକୁ ଟଙ୍ଗଷ୍ଟନ୍ କିମ୍ବା ତମ୍ବାଭଳି କଠିନ ଧାତୁ ଉପରେ ନିକ୍ଷେପ କରିବା ଦ୍ୱାରା ଯେଉଁ ସଂଘର୍ଷ ସୃଷ୍ଟି ହୁଏ, ସେଥିରୁ ପ୍ରତି-ପ୍ରୋଟୋନ୍ ସୃଷ୍ଟି ହୁଏ । ବିଶ୍ୱ ରଶ୍ମିରୁ ମଧ୍ୟ ପ୍ରତି-ପ୍ରୋଟୋନ୍ ଆବିଷ୍କୃତ ହେଲା । ବୈଜ୍ଞାନିକମାନେ ପରୀକ୍ଷା କରି ଜାଣିପାରିଲେ ଯେ ଶକ୍ତିଶାଳୀ ପ୍ରୋଟୋନ୍‌ର ମହାକାଶରେ ଥିବା ଗ୍ୟାସ୍ କିମ୍ବା ଧୂଳିସହ ସଂଘର୍ଷ ଯୋଗୁଁ ପ୍ରତି-ପ୍ରୋଟୋନ୍ ସୃଷ୍ଟି ହେଉଛି ।

ବିଜ୍ଞାନାଗାରରେ ପଜିଟ୍ରନ୍ ଓ ପ୍ରତି-ପ୍ରୋଟୋନ୍‌ର ସୃଷ୍ଟି କରାଯାଇ ପାରିଥିଲେ ସୁଦ୍ଧା ପ୍ରତିବସ୍ତୁର ସୃଷ୍ଟି କରାଯାଇ ପାରି ନ ଥିଲା । ଗୋଟିଏ ପ୍ରତି-ପ୍ରୋଟୋନ୍‌ର ଚାରିପାଖରେ ଗୋଟିଏ କକ୍ଷରେ ପଜିଟ୍ରନ୍‌କୁ ଘୂରାଇବାରେ ଅର୍ଥାତ୍ ପ୍ରତିବସ୍ତୁ ତିଆରି

କରିବାରେ କେହି ସକ୍ଷମ ହୋଇ ପାରି ନ ଥିଲେ । କିନ୍ତୁ 1996 ମସିହାରେ ଜେନେଭାସ୍ଥିତ ଗବେଷଣାଗାରରେ ବୈଜ୍ଞାନିକମାନେ ଉଦଜାନର ପ୍ରତିବସ୍ତୁ ସୃଷ୍ଟି କରି ବିଜ୍ଞାନଜଗତରେ ଆଲୋଡ଼ନ ସୃଷ୍ଟି କଲେ । ବୈଜ୍ଞାନିକମାନେ ପ୍ରଥମେ କଣିକାତ୍ୱରକରେ ଅତି ଉଚ୍ଚ ଶକ୍ତିସଂପନ୍ନ ପ୍ରତି-ପ୍ରୋଟୋନ୍ ସୃଷ୍ଟି କଲେ । ତାପରେ ଜେନନ୍ (xenon) ପରମାଣୁର ନାଭିକ ଉପରେ ଏହାର ସଂଘର୍ଷ କରାଇଲେ । ଏହି ସଂଘର୍ଷରୁ ଉତ୍ପନ୍ନ ଶକ୍ତିରୁ ପଜିଟ୍ରନ୍ ସୃଷ୍ଟି ହେଲା । ସଦ୍ୟ ଉତ୍ପନ୍ନ କେତେକ ପଜିଟ୍ରନ୍ ଓ ପ୍ରତି-ପ୍ରୋଟୋନ୍‌ର ଗତି ଓ ଦିଗ ସମାନ ହେବାରୁ କେତେକ ପଜିଟ୍ରନ୍ ପ୍ରତି-ପ୍ରୋଟୋନ୍ ଚାରିପଟେ ଘୂରିବାକୁ ଲାଗିଲେ । ଏଥିରୁ ପୃଥିବୀରେ ପ୍ରଥମ ଉଦଜାନର ପ୍ରତିବସ୍ତୁ ସୃଷ୍ଟି ହେଲା । ଅବଶ୍ୟ ଏହି ପ୍ରତିବସ୍ତୁ ବହୁତ କମ୍ ସମୟ ତିଷ୍ଠି ପାରିଥିଲା । ଏହା ଗୋଟିଏ ସେକେଣ୍ଡର 4000 କୋଟି ଭାଗରୁ ଏକ ଭାଗ ପର୍ଯ୍ୟନ୍ତ ରହିଥିଲା । ତଥାପି ଏହି ଆବିଷ୍କାର କମ୍ ଗୌରବର କଥା ନୁହେଁ ।

ଜଣାପଡିଛି ଯେ ଯଦି ବସ୍ତୁ ଓ ପ୍ରତିବସ୍ତୁକୁ ଏକତ୍ରିତ କରାଯାଏ, ତାହାହେଲେ ଉଭୟ ତତ୍‌କ୍ଷଣାତ୍ ଧ୍ୱଂସ ପାଇଯିବେ ଏବଂ ଏଥିରୁ ଅମାପ ଶକ୍ତି ଉତ୍ପନ୍ନ ହେବ । ବୈଜ୍ଞାନିକମାନେ ବିଶ୍ୱ ରଶ୍ମିରୁ ପଜିଟ୍ରନ୍, ପ୍ରତି-ପ୍ରୋଟୋନ୍ ଓ ପ୍ରତି-ନିଉଟ୍ରନ୍‌ର ଆବିଷ୍କାର କରିଥିଲେ ହେଁ ଏହି ତିନୋଟିଯାକ ମୌଳିକ କଣାଥିବା ପ୍ରତିବସ୍ତୁର ଆବିଷ୍କାର କରିପାରି ନାହାନ୍ତି । କିନ୍ତୁ ବିଶ୍ୱର କେଉଁ କୋଣରେ ଏହା ଥାଇପାରେ ବୋଲି ସେମାନେ ଅନୁମାନ କରୁଛନ୍ତି । ଆମ ସୌରମଣ୍ଡଳରେ ଏଭଳି ପ୍ରତିବସ୍ତୁର କୌଣସି ସତ୍ତା ନାହିଁ । ଚନ୍ଦ୍ର, ମଙ୍ଗଳ ଓ ଶୁକ୍ର ଗ୍ରହରେ ଏହା ନାହିଁ ବୋଲି ନିଶ୍ଚିତଭାବେ ଜଣାପଡିଛି । କାରଣ ପୃଥିବୀପୃଷ୍ଠରୁ ମହାକାଶଯାନ ଯାଇ ଏହିସବୁ ଜାଗାରେ ଅବତରଣ କରିଛି । ଯଦି ସେଠାରେ ପ୍ରତିବସ୍ତୁ ଥାଆନ୍ତା, ତାହାହେଲେ ବସ୍ତୁରୁ ନିର୍ମିତ ମହାକାଶ ଯାନଗୁଡିକ ଧ୍ୱଂସ ପାଇଯାଇଥାଆନ୍ତା । ସୂର୍ଯ୍ୟରେ ମଧ୍ୟ ପ୍ରତିବସ୍ତୁ ନାହିଁ, କାରଣ ଏଥିରୁ ଆସୁଥିବା ସୌର ବାୟୁ ପୃଥିବୀର ବାୟୁମଣ୍ଡଳରେ କୌଣସି ବସ୍ତୁକୁ ଧ୍ୱଂସ କରିପାରୁ ନାହିଁ କିମ୍ବା ଅନ୍ୟ କୌଣସି ଗ୍ରହ କିମ୍ବା ଉପଗ୍ରହରେ ଏପରି ପ୍ରଭାବ ପଡୁନାହିଁ ।

1200 କୋଟି ବର୍ଷ ପୂର୍ବେ ପ୍ରଚଣ୍ଡ ବିସ୍ଫୋରଣଜନିତ ବିଶ୍ୱ ସୃଷ୍ଟିବେଳେ ଉଭୟ ବସ୍ତୁ ଓ ପ୍ରତିବସ୍ତୁର ସୃଷ୍ଟି ହୋଇଥାଇପାରେ । କିନ୍ତୁ କୌଣସି ଅଜଣା କାରଣରୁ

ବସ୍ତୁର ପରିମାଣ ପ୍ରତିବସ୍ତୁର ପରିମାଣ ଅପେକ୍ଷା ଅଧିକ ଥିଲା । ସମପରିମାଣର ବସ୍ତୁ ଓ ପ୍ରତିବସ୍ତୁର ମିଳନ ଯୋଗୁଁ ଉଭୟ ଧ୍ୱଂସ ପାଇ ଶକ୍ତିର ସୃଷ୍ଟି ହୋଇଛି ବୋଲି ଅନୁମାନ କରାଯାଇଛି । ଅବଶିଷ୍ଟ ଯେଉଁ ବସ୍ତୁ ରହିଲା, ସେଥିରୁ ଆମ ସୌରମଣ୍ଡଳ ତଥା ଅନ୍ୟାନ୍ୟ ତାରକାମଣ୍ଡଳର ସୃଷ୍ଟି ହୋଇଛି । ତଥାପି ବିଶ୍ୱର କେଉଁ ଦୂର ନକ୍ଷତ୍ର ଓ ଗାଲାକ୍ସି ପ୍ରତିବସ୍ତୁରେ ନିର୍ମିତ ଥାଇପାରେ ବୋଲି ବୈଜ୍ଞାନିକଙ୍କ ଅନୁମାନ । ଏହା ଜାଣିବା ପାଇଁ ବର୍ତ୍ତମାନ ବୈଜ୍ଞାନିକମାନେ ଗବେଷଣାରତ । ଏଥିରେ ଗୋଟିଏ ଅସୁବିଧା ହେଉଛି ଯେ, ବସ୍ତୁ ଓ ପ୍ରତିବସ୍ତୁରୁ ହେଉଥିବା ବିକିରଣ ପୂରାପୂରି ଏକା । ଏଣୁ ଏଥିରୁ ଉଭୟ ମଧ୍ୟରେ ପ୍ରଭେଦ ଜାଣି ହେଉନାହିଁ । ସଂପ୍ରତି ବୈଜ୍ଞାନିକମାନେ ଅନ୍ୟ ପ୍ରତି-ନକ୍ଷତ୍ର ଓ ପ୍ରତି-ଗାଲାକ୍ସିର ସନ୍ଧାନ ନେବା ପାଇଁ ଅନ୍ୟ ଗୋଟିଏ ଉପାୟ ବାହାର କରିଛନ୍ତି । ସମସ୍ତ ନକ୍ଷତ୍ର ନିଉଟ୍ରିନୋ ନାମକ ଏକ କଣିକା ବିକିରଣ କରିଥାନ୍ତି । ଏହାର ଗୁଣ ବସ୍ତୁ ଓ ପ୍ରତିବସ୍ତୁ କ୍ଷେତ୍ରରେ ପୃଥକ୍ । ନିଉଟ୍ରିନୋ ଅନ୍ୟ କୌଣସି ପଦାର୍ଥ ସହ ପ୍ରତିକ୍ରିୟା କରେ ନାହିଁ ଏବଂ ଏହା ପ୍ରାୟ ପ୍ରତ୍ୟେକ ପଦାର୍ଥ ମଧ୍ୟଦେଇ ଗତି କରିପାରେ । ଏପରିକି ଆମ ଦେହ ଓ ପୃଥିବୀପୃଷ୍ଠ ମଧ୍ୟଦେଇ ଏହା ଅନବରତ ଗତି କରୁଛି । ବୈଜ୍ଞାନିକମାନେ ଯେଉଁ କେତେକ ନିଉଟ୍ରିନୋକୁ ସନ୍ଧାନ କରିଛନ୍ତି ସେଗୁଡିକ ମଧ୍ୟରେ ପ୍ରତିବସ୍ତୁର କୌଣସି ସନ୍ଧାନ ପାଇ ନାହାନ୍ତି ।

ବୈଜ୍ଞାନିକମାନେ ଆଶା କରୁଛନ୍ତି ଯେ, ପ୍ରତିବସ୍ତୁରୁ ପ୍ରଚୁର ଶକ୍ତି ଉତ୍ପାଦନ କରାଯାଇପାରିବ । ମହାକାଶଯାନ କିମ୍ବା ପରମାଣୁ ବୋମାରେ ଏହି ଶକ୍ତି ପ୍ରୟୋଗ ହେବାର ସମ୍ଭାବନାକୁ ଏଡ଼ାଇ ହେଉନାହିଁ । ଉଦଜାନର ପ୍ରତିବସ୍ତୁ ସୃଷ୍ଟି ହେଲାପରେ ବୈଜ୍ଞାନିକମାନେ ଏହାର ପରବର୍ତ୍ତୀ ପରମାଣୁ ହିଲିୟମ୍‌ର ପ୍ରତିବସ୍ତୁ ନିର୍ମାଣରେ ମନୋନିବେଶ କରିଛନ୍ତି ।

# ଚତୁର୍ବିଧ ମୌଳିକ ବଳ

ଆମେ ଜାଣିଲେ ଯେ ବିଶ୍ୱର ପ୍ରତ୍ୟେକ ବସ୍ତୁ କେତେଗୋଟି ପରମାଣୁରୁ ଗଠିତ ଏବଂ ପରମାଣୁ ମଧ୍ୟ କେତୋଟି ପ୍ରାଥମିକ କଣିକାକୁ ନେଇ ଗଠିତ ହୋଇଛି । କଣିକାଗୁଡିକ ପରସ୍ପର ମଧ୍ୟରେ ବିଭିନ୍ନ ପ୍ରକ୍ରିୟା ସଂଗଠନ କରିଥାଆନ୍ତି । ଏହାର ମାଧ୍ୟମକୁ ମୌଳିକ ବଳ (fundamental force) କୁହାଯାଏ । ପ୍ରକୃତିରେ ଚାରି ପ୍ରକାରର ମୌଳିକ ବଳ ଅଛି । ସେଗୁଡ଼ିକ ହେଉଛି-

1. ମହାକର୍ଷଣ ବଳ (gravitational force)
2. ବିଦ୍ୟୁତ୍-ଚୁମ୍ବକୀୟ ବଳ (electromagnetic force)
3. ଦୃଢ ନାଭିକୀୟ ବଳ (strong nuclear force)
4. କ୍ଷୀଣ ନାଭିକୀୟ ବଳ (weak nuclear force)

ଏହି ବଳଗୁଡ଼ିକ ମଧ୍ୟରୁ ମହାକର୍ଷଣ ବଳ ଏବଂ ବିଦ୍ୟୁତ୍-ଚୁମ୍ବକୀୟ ବଳ ହେଉଛି ସୁଦୂରପ୍ରସାରୀ (long range); ଅର୍ଥାତ୍ ଏଗୁଡ଼ିକ ବହୁତ ଦୂର ପର୍ଯ୍ୟନ୍ତ କାମ କରିଥାଏ । ଅନ୍ୟପକ୍ଷରେ ଦୃଢ ନାଭିକୀୟ ବଳ ଏବଂ କ୍ଷୀଣ ନାଭିକୀୟ ବଳ ହେଉଛି ଅଦୂର ପ୍ରଭାବୀ (short range) । ଆମ ଆଲୋଚିତ ପରମାଣୁରେ ମହାକର୍ଷଣ ବଳ କାମ କରିନଥାଏ; ମାତ୍ର ଅନ୍ୟ ତିନୋଟି ବଳର ପ୍ରଭାବ ପରମାଣୁରେ ଅନୁଭୂତ ହେଉଥାଏ ।

### ମହାକର୍ଷଣ ବଳ

ଇଂରେଜୀ ବୈଜ୍ଞାନିକ ସାର୍ ଆଇଜାକ୍ ନିଉଟନ୍ ମହାକର୍ଷଣ ବଳର ନିୟମକୁ ଆବିଷ୍କାର କରିଥିଲେ । ଏହି ନିୟମ ହେଉଛି, 'ବିଶ୍ୱରେ ପ୍ରତ୍ୟେକ ବସ୍ତୁ ଅନ୍ୟ ବସ୍ତୁକୁ ଆକର୍ଷଣ କରିଥାଏ । ଆକର୍ଷଣ ବଳ ବସ୍ତୁ ଦୁଇଟିର ବସ୍ତୁତ୍ୱର ଗୁଣଫଳ ସହ ସମାନୁପାତୀ ଏବଂ ବସ୍ତୁ ଦୁଇଟି ମଧ୍ୟରେ ଥିବା ଦୂରତାର ବର୍ଗ ସହ

ପ୍ରତିଲୋମାନୁପାତୀ' । ଗାଣିତିକ ଉପାୟରେ ଏହାକୁ ନିମ୍ନ ଭାବରେ ପ୍ରକାଶ କରାଯାଇପାରିବ ।



ଚିତ୍ର-୩୪: ଆଇଜାକ୍ ନିଉଟନ୍

$$F = G\frac{m_1m_2}{r^2}$$

ଏଠାରେ, F = ମହାକର୍ଷଣ ବଳ

$m_1, m_2$ = ବସ୍ତୁ ଦୁଇଟିର ବସ୍ତୁତ୍ୱ

r = ବସ୍ତୁ ଦୁଇଟି ମଧ୍ୟରେ ଦୂରତା

G = ସାର୍ବଜନୀନ ମହାକର୍ଷଣୀୟ ଧ୍ରୁବାଙ୍କ

G ର ମୂଲ୍ୟ ହେଉଛି $6.67 \times 10^{-11}$ ନିଉଟନ୍ × (ମି.)² / (କି.ଗ୍ରା.)² ଏବଂ ଏହାର ମୂଲ୍ୟ ବିଶ୍ୱର ପ୍ରତ୍ୟେକ ସ୍ଥାନରେ ସମାନ । ଆମେ ଉପରକୁ ଢେଳାଟିଏ ଫିଙ୍ଗିଲେ, ଏହା ତଳକୁ ଖସିପଡୁଛି । ଏହାର ମୂଳରେ ଅଛି ପୃଥିବୀର ମହାକର୍ଷଣ ବଳ ଯାହା ମଧ୍ୟ ମାଧ୍ୟାକର୍ଷଣ ବଳ ନାମରେ ଜଣା । ମହାକର୍ଷଣ ବଳ ଯୋଗୁଁ ସୌରଜଗତର ଗ୍ରହଗୁଡ଼ିକ ସୂର୍ଯ୍ୟ ଚାରିପାଖରେ ଘୂରୁଛନ୍ତି ।

**ବିଦ୍ୟୁତ୍-ଚୁମ୍ବକୀୟ ବଳ**

ବିଦ୍ୟୁତ୍-ଚୁମ୍ବକୀୟ ବଳକୁ ମହାକର୍ଷଣ ବଳର ସୂତ୍ର ଭଳି ପ୍ରକାଶ କରାଯାଇଥାଏ । ଯଦି ଦୁଇଟି କଣିକାର ଚାର୍ଜ $q_1$ ଓ $q_2$ ହୁଏ ଏବଂ ସେମାନଙ୍କ ମଧ୍ୟରେ ଦୂରତା r ହୁଏ, ତାହାହେଲେ ବିଦ୍ୟୁତ୍-ଚୁମ୍ବକୀୟ ବଳର ପରିମାଣ ହେଉଛି,

$$F_e = k\frac{q_1q_2}{r^2}$$

ଏଠାରେ k ହେଉଛି ଗୋଟିଏ ଧ୍ରୁବାଙ୍କ (constant) ଏବଂ ଯେଉଁ ମାଧ୍ୟମରେ କଣିକା ଦୁଇଟି ରହିଛି, ଏହା ତାହା ଉପରେ ନିର୍ଭର କରିଥାଏ ।

ଆମର ଦୈନନ୍ଦିନ ଜୀବନରେ ବ୍ୟବହୃତ ବୈଦ୍ୟୁତିକ ଉପକରଣର ବ୍ୟବହାର ବିଦ୍ୟୁତ୍-ଚୁମ୍ବକୀୟ ଶକ୍ତି ଯୋଗୁଁ ସମ୍ଭବ ହେଉଛି । ବିଦ୍ୟୁତ୍-ଚୁମ୍ବକୀୟ ବଳ ଯୋଗୁଁ ପରମାଣୁ ମଧ୍ୟରେ ଋଣାତ୍ମକ ଚାର୍ଜଯୁକ୍ତ ଇଲେକ୍ଟ୍ରନ୍‌ଗୁଡିକ ଧନାତ୍ମକ ଚାର୍ଜ ବିଶିଷ୍ଟ ନାଭିକ ଚାରିପଟେ ଘୂରୁଛନ୍ତି । ନାଭିକର ନିକଟତମ କକ୍ଷରେ ଥିବା ଇଲେକ୍ଟ୍ରନ୍‌ରେ ଏହାପର କକ୍ଷରେ ଥିବା ଇଲେକ୍ଟ୍ରନ୍ ଅପେକ୍ଷା ଅଧିକ ବଳ କାମ କରିଥାଏ

(ଏହା ଉପର ସୂତ୍ରରୁ ମଧ୍ୟ ଜଣାଯିବ) । ସବୁଠାରୁ ଶେଷ କକ୍ଷ ବା ସେଲ୍‌ରେ ଥିବା ଇଲେକ୍‌ଟ୍ରନ୍‌ଗୁଡିକ ଅଧିକ ଭାବରେ ଢିଲା ଥାଆନ୍ତି ଏବଂ ଏହା ପରମାଣୁର ରାସାୟନିକ ପ୍ରକୃତିକୁ ନିର୍ଦ୍ଧାରଣ କରିଥାଏ । ମହାକର୍ଷଣ ବଳ ସର୍ବଦା ଆକର୍ଷଣ ହୋଇଥିବାବେଳେ ବିଦ୍ୟୁତ୍ ଚୁମ୍ବକୀୟ ବଳ ଉଭୟ ଆକର୍ଷଣ କିମ୍ବା ବିକର୍ଷଣ ହୋଇଥାଏ ।

### ଦୃଢ ଆଣବିକ ବଳ

ନାଭିକ ମଧ୍ୟରେ ଧନାତ୍ମକ ଚାର୍ଜ ପ୍ରୋଟୋନ୍‌ଗୁଡିକ ପରସ୍ପରକୁ ବିକର୍ଷଣ କରି ଅଲଗା ହୋଇଯିବା କଥା । ମାତ୍ର ଏପରି ହେଉନାହିଁ । ଦୃଢ ଆଣବିକ ବଳ ବିକର୍ଷଣ ବଳକୁ ପ୍ରତିହତ କରି ନାଭିକ ମଧ୍ୟରେ ପ୍ରୋଟୋନ୍‌ଗୁଡିକୁ ବାନ୍ଧି ଏକାଠି ରଖିଥାଏ । ଏହି ବଳ ଯୋଗୁଁ ନିଉଟ୍ରନ୍‌ଗୁଡିକ ମଧ୍ୟ ନାଭିକ ମଧ୍ୟରେ ବାନ୍ଧି ହୋଇଥାଆନ୍ତି । ଏହି ବଳ ବହୁତ ଶକ୍ତିଶାଳୀ, ମାତ୍ର ଏହା ଅଳ୍ପ ଦୂରତା ମଧ୍ୟରେ କାର୍ଯ୍ୟ କରିଥାଏ ।

### କ୍ଷୀଣ ଆଣବିକ ବଳ

କ୍ଷୀଣ ଆଣବିକ ବଳ କୌଣସି କଣିକାକୁ ବାନ୍ଧି ରଖିପାରେ ନାହିଁ । ଏହା ଯୋଗୁଁ ତେଜସ୍କ୍ରିୟ ପଦାର୍ଥଗୁଡିକର କ୍ଷୟ ହୋଇଥାଏ ।

### ବଳବାହକ(Force carrier)

ଚାରି ମୌଳିକ ବଳବସ୍ତୁକୁ ସହଜରେ ଚିହ୍ନଟ ଓ ପ୍ରୟୋଗ କରିବା ପାଇଁ ମଧ୍ୟସ୍ଥି କଣିକା (mediator particle)ର ସାହାଯ୍ୟ ନିଆଯାଇଛି । ଏଗୁଡ଼ିକୁ ବଳବାହକ କୁହାଯାଏ । ମହାକର୍ଷଣ ବଳର ବାହକ ହେଉଛି ଗ୍ରାଭିଟନ୍ (graviton)




[ଚିତ୍ର-୨୨: ଚାରି ମୌଳିକ ବଳ]

ଏବଂ ଏହାର ସ୍ଥିର ବସ୍ତୁତ୍ୱ (rest mass) ହେଉଛି ଶୂନ । ବିଦ୍ୟୁତ୍-ଚୁମ୍ବକୀୟ ବଳର ବାହକ ହେଉଛି ଫୋଟନ୍ ଏବଂ ଏହାର ବସ୍ତୁତ୍ୱ ମଧ୍ୟ ହେଉଛି ଶୂନ । ଦୃଢ଼ ଆଣବିକ ବଳର ବାହକ ହେଉଛି ଗ୍ଲୁଅନ୍ (gluon) ନାମକ କଣିକା ଯାହାର ସ୍ଥିର ବସ୍ତୁତ୍ୱ ହେଉଛି ଶୂନ । ପୁନଶ୍ଚ ଆଠ ପ୍ରକାରର ଗ୍ଲୁଅନ୍ କଣିକା ଅଛି । କ୍ଷୀଣ ଆଣବିକ ବଳର ବାହକ ହେଉଛି ତିନୋଟି କଣିକା । ସେଗୁଡ଼ିକ ହେଉଛି $W^+$,$W^-$ ଓ $Z^0$ କଣିକା । ସେଗୁଡ଼ିକ ଯଥାକ୍ରମେ ହେଉଛନ୍ତି ଧନାତ୍ମକ, ଋଣାତ୍ମକ ଓ ଚାର୍ଜବିହୀନ କଣିକା । ଏହିସବୁ ସମ୍ବନ୍ଧରେ ବିଶଦ ଆଲୋଚନା ଏଠାରେ କରାଯାଉନାହିଁ । ଏହି ଜଟିଳ ତତ୍ତ୍ୱକୁ ବୁଝିବା ପାଇଁ ଉଚ୍ଚତର ଶିକ୍ଷା ଦରକାର । ଚାରି ବଳର ସଂକ୍ଷିପ୍ତ ସୂଚନା ସାରଣୀ-3 ରେ ପ୍ରଦାନ କରାଯାଇଛି ।

ସାରଣୀ-3: ଚତୁର୍ବିଧ ମୌଳିକ ବଳ

| ବଳ | ବଳ ବାହକ କଣିକା | ବ୍ୟାପ୍ତି (ମିଟର) | ଆପେକ୍ଷିକ ଶକ୍ତି |
|---|---|---|---|
| ଦୃଢ଼ ଆଣବିକ | ଗ୍ଲୁଅନ୍ | $10^{-15}$ | $10^{38}$ |
| ବିଦ୍ୟୁତ୍-ଚୁମ୍ବକୀୟ | ଫୋଟନ୍ | ∞ | $10^{36}$ |
| କ୍ଷୀଣ ଆଣବିକ | W ଓ Z ବୋସୋନ୍ | $10^{-18}$ | $10^{25}$ |
| ମହାକର୍ଷଣ | ଗ୍ରାଭିଟନ୍ | ∞ | 1 |

**ଚତୁର୍ବିଧ ବଳର ଏକତ୍ରୀକରଣ:-** ଚାରିଟିଯାକ ମୌଳିକ ବଳକୁ ଏକାଠି କରି ଗୋଟିଏ ସୂତ୍ରରେ ବାନ୍ଧି ରଖିବା ପାଇଁ ବୈଜ୍ଞାନିକମାନେ ଚେଷ୍ଟା ଚଳାଇଛନ୍ତି । ଏପରିକି ଆଇନ୍‌ଷ୍ଟାଇନ୍ ତାଙ୍କ ଜୀବନର ଶେଷ 25ବର୍ଷ ଏହା ଉପରେ କାମ କରି ମଧ୍ୟ ସଫଳ ହୋଇପାରିନଥିଲେ । ଏହି ଚାରିଟି ବଳର ଏକତ୍ରୀକରଣକୁ ଏକୀକୃତ ତତ୍ତ୍ୱ (unified theory) କୁହାଯାଏ । ବୈଜ୍ଞାନିକମାନେ ବର୍ତ୍ତମାନ ସୁଦ୍ଧା ମହାକର୍ଷଣ ବଳ ବ୍ୟତୀତ ଅନ୍ୟ ତିନି ବଳକୁ ଗୋଟିଏ ଗାଣିତିକ ସମୀକରଣରେ ପ୍ରକାଶ କରିପାରିଛନ୍ତି । ମହାକର୍ଷଣ ବଳକୁ ଏଥିରେ ମିଶାଇ ଗୋଟିଏ ତତ୍ତ୍ୱ ପ୍ରକାଶ ପାଇଛି ଯାହା ସମସ୍ତଙ୍କର ଗ୍ରହଣୀୟ ହୋଇପାରିନାହିଁ । ଏହା ରଜ୍ଜୁତତ୍ତ୍ୱ (String theory) ନାମରେ ଜଣା ।

# ନାଭିକର ଶକ୍ତି

ଏପର୍ଯ୍ୟନ୍ତ ଆମେ ଇଲେକ୍‌ଟ୍ରନ୍‌ର ଆଚରଣ ସମ୍ବନ୍ଧରେ ଜାଣିଲେ ଏବଂ ରାସାୟନିକ ପ୍ରକ୍ରିୟା ପାଇଁ ଏହା କିପରି ଦାୟୀ, ତାହା ଜାଣିଲେ । ବର୍ତ୍ତମାନ ନାଭିକର ଆଚରଣକୁ ଦେଖିବା ।

ଆଗରୁ କୁହାଯାଉଛି ଯେ ପ୍ରୋଟୋନ୍ ଓ ନିଉଟ୍ରନ୍ ଖୁନ୍ଦାଖୁନ୍ଦି ହୋଇ ପରମାଣୁର କେନ୍ଦ୍ରରେ ଥିବା ନାଭିକରେ ଅଛି । ପ୍ରୋଟୋନ୍ ହେଉଛି ଧନାତ୍ମକ ଚାର୍ଜ କଣିକା ଓ ନିଉଟ୍ରନ୍ ହେଉଛି ଚାର୍ଜବିହୀନ କଣିକା । ଆମେ ମଧ୍ୟ ଜାଣିଛେ ଯେ ପ୍ରୋଟୋନ୍‌ଗୁଡିକ ମଧ୍ୟରେ ସୃଷ୍ଟି ହେଉଥିବା ବିକର୍ଷଣ ବଳକୁ ପ୍ରତିହତ କରି ନାଭିକରେ 'ଦୃଢ ଆଣବିକ ବଳ' ସେଗୁଡିକୁ ଏକାଠି ରଖିପାରିଛି । ଏହି ବଳ ଏକ ପ୍ରକାର ଶକ୍ତିରୁ



[ଚିତ୍ର-40: ଆଲବର୍ଟ ଆଇନଷ୍ଟାଇନ୍]

ଆସିଥାଏ । ଏହି ଶକ୍ତିକୁ ନାଭିକର ବନ୍ଧନ ଶକ୍ତି (binding energy) କୁହାଯାଏ । ଏହି ଶକ୍ତି ପୁଣି କେଉଁଠୁ ଆସେ ?

ଗତ ଶତାବ୍ଦୀର ବିଶିଷ୍ଟ ବୈଜ୍ଞାନିକ ଆଲବର୍ଟ ଆଇନଷ୍ଟାଇନ୍‌ଙ୍କ ପ୍ରସିଦ୍ଧ ଆପେକ୍ଷିକତା ତତ୍ତ୍ୱର ଏକ ସିଦ୍ଧାନ୍ତରୁ ଏହା ଜଣାପଡେ । ଏହି ଅନୁଯାୟୀ ବସ୍ତୁ ଓ ଶକ୍ତି ହେଉଛି ଗୋଟିଏ ମୁଦ୍ରାର ଦୁଇ ପାର୍ଶ୍ୱ ସଦୃଶ । ବସ୍ତୁକୁ ଶକ୍ତିରେ ଏବଂ ଶକ୍ତିକୁ ବସ୍ତୁରେ ପରିଣତ କରିହେବ । ସେ ଏହି ସମ୍ବନ୍ଧୀୟ ଦେଇଥିବା ସମୀକରଣକୁ ବିଜ୍ଞାନ ଇତିହାସରେ ଶ୍ରେଷ୍ଠ ସମୀକରଣର ମାନ୍ୟତା ଦିଆଯାଇଛି । ଏହା ହେଉଛି,

$$E = mc^2$$

ଅର୍ଥାତ୍, ଶକ୍ତି = ବସ୍ତୁତ୍ୱ × ଆଲୋକ ବେଗର ବର୍ଗ ।

ଏଥିରୁ ପରମାଣୁର ବନ୍ଧନ ଶକ୍ତିର ଉତ୍ସ ମିଳିଯିବ । ଜଣାପଡ଼ିଛି ଯେ ନାଭିକର ବସ୍ତୁତ୍ୱ ଏଥିରେ ଥିବା ମୋଟ ପ୍ରୋଟୋନ୍ ଓ ନିଉଟ୍ରନ୍‌ର ବସ୍ତୁତ୍ୱଠାରୁ ସାମାନ୍ୟ କମ୍ । ବସ୍ତୁତ୍ୱର ଏହି ପାର୍ଥକ୍ୟ ଆଇନଷ୍ଟାଇନ୍‌ଙ୍କ ସୂତ୍ର ଅନୁଯାୟୀ ଶକ୍ତିରେ ପରିଣତ ହୋଇଛି ଯାହା ନାଭିକ ଭିତରେ ପ୍ରୋଟୋନ୍ ଓ ନିଉଟ୍ରନ୍‌ଗୁଡ଼ିକୁ ଏକାଠି ରଖିପାରିଛି । ଆଲୋକର ବେଗ ହେଉଛି ସେକେଣ୍ଡ ପ୍ରତି ୩୦୦,୦୦୦ କି.ମି । ଏଣୁ ଅଳ୍ପ ଟିକିଏ ବସ୍ତୁରୁ କେତେ ପରିମାଣର ଶକ୍ତି ଉତ୍ପନ୍ନ ହେବ, ତାହା ଅନୁମେୟ ।

# ତେଜସ୍କ୍ରିୟତା

କୌଣସି ପରମାଣୁର ନାଭିକ ସ୍ୱୟଂକ୍ରିୟଭାବେ ବସ୍ତୁତ୍ୱ ହରାଇବାକୁ ତେଜସ୍କ୍ରିୟତା (radioactivity) କୁହାଯାଏ । ଏହା ଏକ ନାଭିକୀୟ ପ୍ରକ୍ରିୟା (nuclear reaction) । ଏଥିରୁ ନିର୍ଗତ ବସ୍ତୁ ବିଭିନ୍ନ କଣିକା କିମ୍ବା ରଶ୍ମି ଆକାରରେ ନିର୍ଗତ ହୋଇଥାଏ । ଏହି ପ୍ରକାର ନିର୍ଗତକୁ ବିକିରଣ (radiation) କୁହାଯାଏ । ବିକିରଣ ପରେ ମୂଳ ମୌଳିକ ପଦାର୍ଥରେ ନାଭିକର ବସ୍ତୁତ୍ୱ ହ୍ରାସ ହୋଇ ଏହା ଅନ୍ୟ ଏକ ମୌଳିକ ପଦାର୍ଥରେ ପରିଣତ ହୋଇଥାଏ । ବିଜ୍ଞାନ ଭାଷାରେ ଏହାକୁ ଅବକ୍ଷୟ (decay) କୁହାଯାଏ । ମୂଳ ମୌଳିକ ପଦାର୍ଥର ନାଭିକ ଅସ୍ଥିର ଥାଏ । ବସ୍ତୁତ୍ୱ ହରାଇ ନାଭିକଟି ସ୍ଥିରାବସ୍ଥାକୁ ଆସିଲେ ଏଥିରୁ ଆଉ ବସ୍ତୁ ନିର୍ଗତ ହୁଏ ନାହିଁ ଏବଂ ଏହା ତେଜସ୍କ୍ରିୟତା ହରାଇଥାଏ ।

### ଆବିଷ୍କାର

ଫରାସୀ ପଦାର୍ଥ ବିଜ୍ଞାନୀ ଆଣ୍ଟୋନି ହେନରି ବେକରେଲ୍ ୧୮୨୬ ମସିହାରେ ପ୍ରଥମେ ତେଜସ୍କ୍ରିୟତା ଆବିଷ୍କାର କଲେ । ପରୀକ୍ଷାଗାରରେ ସେ ଲକ୍ଷ୍ୟ କଲେ ଯେ ୟୁରାନିୟମ୍‌ଠାରୁ ଗୋଟିଏ ଫଟୋଗ୍ରାଫିକ୍ ପ୍ଲେଟ୍ କାଚ କିମ୍ବା କଳା କାଗଜଦ୍ୱାରା ଅଲଗା ରହିଥିଲେ ମଧ୍ୟ ପ୍ଲେଟ୍‌ଟିକୁ ୟୁରାନିୟମ୍ କଳା କରିଦେଲା । ସେ ମଧ୍ୟ ଲକ୍ଷ୍ୟ କଲେ ଯେ ପ୍ଲେଟ୍‌ଟିକୁ କଳା କରି ଦେଉଥିବା ୟୁରାନିୟମ୍‌ରୁ ନିର୍ଗତ ରଶ୍ମି ମଧ୍ୟ ଗୋଟିଏ ବିଦ୍ୟୁତ୍ ବିକ୍ଷେପ (electroscope)କୁ ଚାର୍ଜରହିତ (discharge) କରି ଦେଉଛି । ଏଥିରୁ ଜଣାପଡ଼ିଲା ଯେ ଏହି ରଶ୍ମିର ବିଦ୍ୟୁତ୍ ଚାର୍ଜ ରହିଛି ।

୧୮୨୮ ମସିହାରେ ଫରାସୀ ରସାୟନ ବିଜ୍ଞାନୀ ମେରି କ୍ୟୁରି ଓ ପିଏରି କ୍ୟୁରି ପ୍ରମାଣ କଲେ ଯେ ତେଜସ୍କ୍ରିୟତା ପରିଘଟଣା (phenomenon) ପରମାଣୁ ସହ ସଂଶ୍ଳିଷ୍ଟ । ଏହାର ପରମାଣୁର ଭୌତିକ କିମ୍ବା ରାସାୟନିକ ଅବସ୍ଥା ସହ ସଂପର୍କ

ନାହିଁ । ସେମାନେ ମଧ୍ୟ ମତ ଦେଲେ ଯେ ବେକରେଲ୍ ବ୍ୟବହାର କରିଥିବା ୟୁରାନିୟମ୍ ଲବଣ ଅପେକ୍ଷା ୟୁରାନିୟମ୍ ଥିବା ଆକରିକ (ore) ପିଚ୍‌ବ୍ଲେଣ୍ଡ (pitch blende) ରେ ତେଜସ୍କ୍ରିୟତାର ତୀବ୍ରତା ଅଧିକ ଥିବାରୁ ଏହି ଆକରିକରେ ଅନ୍ୟାନ୍ୟ ତେଜସ୍କ୍ରିୟ ପଦାର୍ଥ ନିଶ୍ଚୟ ରହିଛି । ସେମାନେ ପିଚ୍‌ବ୍ଲେଣ୍ଡରେ କେତେଗୁଡ଼ିଏ ରାସାୟନିକ ପରୀକ୍ଷା କରି ଦୁଇଟି ତେଜସ୍କ୍ରିୟ ମୌଳିକ ପଦାର୍ଥ ଆବିଷ୍କାର କଲେ । ଏହି ଦୁଇଟି ହେଉଛି ପୋଲୋନିୟମ୍ ଓ ରେଡିୟମ୍ । ମେରି କ୍ୟୁରି ଆବିଷ୍କାର କଲେ ଯେ ଥୋରିୟମ୍ ମଧ୍ୟ ହେଉଛି ଗୋଟିଏ ତେଜସ୍କ୍ରିୟ ମୌଳିକ ପଦାର୍ଥ ।

୧୮୯୯ ମସିହାରେ ଅନ୍ୟତମ ଫରାସୀ ରସାୟନବିଜ୍ଞାନୀ ଆନ୍ଦ୍ରେ ଲୁଇସ୍ ଡ଼େବଏର୍ଣ୍ଣେ ତେଜସ୍କ୍ରିୟ ମୌଳିକ ପଦାର୍ଥ ଆକ୍‌ଟିନିୟମ୍ ଏବଂ ସେହି ବର୍ଷ ଇଂରେଜୀ ପଦାର୍ଥବିଜ୍ଞାନୀ ଆର୍ଣ୍ଣଷ୍ଟ୍ ରୁଥରଫୋର୍ଡ ଓ ଫ୍ରେଡ଼େରିକ୍ ସୋଡି ତେଜସ୍କ୍ରିୟ ଗ୍ୟାସ୍ ରେଡନ୍ ଆବିଷ୍କାର କଲେ ।

ତେଜସ୍କ୍ରିୟତା ଆବିଷ୍କାର ପାଇଁ ମେରି କ୍ୟୁରି, ପିଏରି କ୍ୟୁରି ଓ ହେନେରି ବେକରେଲ୍‌ଙ୍କୁ 1903 ମସିହାରେ ପଦାର୍ଥ ବିଜ୍ଞାନରେ ନୋବେଲ ପୁରସ୍କାର ପ୍ରଦାନ କରାଯାଇଥିଲା ।

## ତେଜସ୍କ୍ରିୟତାର କାରଣ

ପରମାଣୁର ନାଭିକରେ ପ୍ରୋଟୋନ୍ ଓ ନିଉଟ୍ରନ୍‌ଗୁଡିକ ଖୁନ୍ଦାଖୁନ୍ଦି ହୋଇ ଖୁବ୍ ଅଳ୍ପ ଜାଗାରେ ରହିଥାଏ । ଏଗୁଡିକୁ ସେହି ସ୍ୱଳ୍ପ ସ୍ଥାନରେ ଧରି ରଖିବା ପାଇଁ କିଛି ଶକ୍ତି ବ୍ୟବହୃତ ହୋଇଥାଏ । ତେଜସ୍କ୍ରିୟ ପଦାର୍ଥଗୁଡିକର ପରମାଣୁର ନାଭିକରେ ଅପେକ୍ଷାକୃତ ଅଧିକ ସଂଖ୍ୟକ ନିଉଟ୍ରନ୍ ଥାଏ । ଏଥିପାଇଁ ଏହାର ନାଭିକରେ ଅଧିକ ଶକ୍ତି ଥାଏ, ଯାହା ଏହାକୁ ଅସ୍ଥିର (unstable) କରେ । ଏହି ଶକ୍ତିକୁ ଧୀରେ ଧୀରେ ନିର୍ଗତ କରି ତାହା ସ୍ଥିର (stable) ପରମାଣୁରେ ପରିଣତ ହୋଇଯାଏ ।

## ତେଜସ୍କ୍ରିୟ ବିକିରଣର ପ୍ରକାରଭେଦ

ତେଜସ୍କ୍ରିୟ ପଦାର୍ଥରୁ ଅନବରତ ବସ୍ତୁତ୍ୱ ନିର୍ଗତ ହେଉଥାଏ । ବିଭିନ୍ନ ପଦାର୍ଥରୁ ବିଭିନ୍ନ ପ୍ରକାର ବସ୍ତୁତ୍ୱ ବିକିରଣ ହୁଏ ।

## (କ) ଆଲ୍‌ଫା କଣିକା

ଦୁଇଟି ପ୍ରୋଟୋନ୍ ଓ ଦୁଇଟି ନିଉଟ୍ରନ୍‌କୁ ନେଇ ଆଲ୍‌ଫା କଣିକା ଗଠିତ । ହିଲିୟମ୍ ପରମାଣୁର ନାଭିକ ସହ ଏହା ସମାନ । ଏହା କୌଣସି ପଦାର୍ଥ ମଧ୍ୟ ଦେଇ ବେଶି ଦୂର ଯାଇପାରେ ନାହିଁ । ଉଦାହରଣସ୍ୱରୂପ, ଆଲୁମିନିୟମ୍ ଭିତରେ ଏହା ଏକ ସେଣ୍ଟିମିଟରର ହଜାର ଭାଗରୁ ଏକ ଭାଗ ପର୍ଯ୍ୟନ୍ତ ଯାଇପାରେ । ବିଦ୍ୟୁତ୍ କ୍ଷେତ୍ରରେ ଏହା ଋଣାତ୍ମକ ମେରୁ ଆଡକୁ ଆକର୍ଷିତ ହୋଇଥାଏ । ଏଣୁ ଏଥିରେ ଧନାତ୍ମକ ଚାର୍ଜ ରହିଛି । ୧୮୨୨ ମସିହାରେ ରୁଥରଫୋର୍ଡ ଏହାକୁ ପ୍ରଥମେ ଚିହ୍ନଟ କରିଥିଲେ । ଆଲ୍‌ଫା ବିକିରଣ ପରେ ମୂଳ ମୌଳିକ ପଦାର୍ଥଟି ଅନ୍ୟ ଏକ କମ୍ ପାରମାଣବିକ ସଂଖ୍ୟା ସଂପନ୍ନ ମୌଳିକ ପଦାର୍ଥରେ ପରିଣତ ହୋଇଥାଏ । ଉଦାହରଣସ୍ୱରୂପ, ୟୁରାନିୟମ୍ 238କୁ ନିଆଯାଉ । ଏହାର ନାଭିକରେ ୨2ଟି ପ୍ରୋଟୋନ୍ ଅଛି । ଏଣୁ ଏହାର ପରମାଣବିକ ସଂଖ୍ୟା ହେଉଛି ୨2 । ଗୋଟିଏ ଆଲ୍‌ଫା କଣିକା ନିର୍ଗତ କରିବା ପରେ ଏହାର ପ୍ରୋଟୋନ୍ ସଂଖ୍ୟା ଦୁଇ ଓ ବସ୍ତୁତ୍ୱ ସଂଖ୍ୟା ଚାରି ହ୍ରାସ ପାଇଲା । ଅବକ୍ଷୟଦ୍ୱାରା ସୃଷ୍ଟି ନୂତନ ପଦାର୍ଥର ପରମାଣୁରେ ବର୍ତ୍ତମାନ ୨0ଟି ପ୍ରୋଟୋନ୍ ରହିଲା ଓ ଏହାର ବସ୍ତୁତ୍ୱ ସଂଖ୍ୟା 234 ହେଲା । ଏହା ହେଉଛି ୨0 ପରମାଣବିକ ସଂଖ୍ୟା ସଂପନ୍ନ ଥୋରିୟମ୍‌ର ଏକ ସମସ୍ଥାନିକ ।

## (ଖ) ବିଟା କଣିକା

ବିଟା କଣିକା ଏକ ଇଲେକ୍‌ଟ୍ରନ୍‌ର ସମତୁଲ୍ୟ ଅଟେ । ଏହା କଠିନ ପଦାର୍ଥ ମଧ୍ୟ ଦେଇ ଆଲ୍‌ଫା କଣିକାର 100 ଗୁଣ ଅଧିକ ବାଟ ଗତିକରିପାରେ । ଋଣାତ୍ମକ ଚାର୍ଜ ବିଶିଷ୍ଟ ଏହି କଣିକାକୁ ୧୮୨୪ ମସିହାରେ ବେକରେଲ୍ ପ୍ରଥମେ ଚିହ୍ନଟ କରିଥିଲେ ।

ବିଟାଜନିତ ଅବକ୍ଷୟପରେ ନାଭିକରେ ଗୋଟିଏ ଅଧିକ ପ୍ରୋଟୋନ୍ ରହେ । ଫଳରେ ଏହା ଅନ୍ୟ ଗୋଟିଏ ମୌଳିକ ପଦାର୍ଥରେ ପରିଣତ ହୋଇଥାଏ । ଉଦାହରଣସ୍ୱରୂପ, ଥୋରିୟମ୍-234 ଗୋଟିଏ ବିଟା କଣିକା ନିର୍ଗତ କରିବା କଥା ବିଚାର କରାଯାଉ । ବିଟା କଣିକା ହେଉଛି ଏକ ଇଲେକ୍‌ଟ୍ରନ୍ ଯାହାର ବସ୍ତୁତ୍ୱ ଅତି ନଗଣ୍ୟ । ଥୋରିୟମ୍‌ର ପରମାଣବିକ ସଂଖ୍ୟା ହେଲା ୨0 । ଏଣୁ ବିଟା ଅବକ୍ଷୟ ପରେ ଏହାର ପ୍ରୋଟୋନ୍ ସଂଖ୍ୟା ଗୋଟିଏ ବଢ଼ିଯାଏ ଏବଂ ତହିଁରୁ ଉତ୍ପନ୍ନ ନୂତନ

ପରମାଣୁର ପରମାଣବିକ ସଂଖ୍ୟା ୨୧ ହୁଏ । ବିଟା କଣିକାର ବସ୍ତୁତ୍ୱ ନଗଣ୍ୟ ଥିବାରୁ ନୂତନ ପରମାଣୁର ବସ୍ତୁତ୍ୱ ସମାନ ରହେ । ଏହି ନୂତନ ମୌଳିକ ପଦାର୍ଥଟି ହେଲା ପ୍ରୋଟାକ୍‌ଟିନିୟମ୍-234 ।

## (ଗ) ଗାମା ବିକିରଣ

ଗାମା ରଶ୍ମି ହେଉଛି ଉଚ୍ଚ ଶକ୍ତି ସଂପନ୍ନ ଫୋଟନ୍ । ତେଜସ୍କ୍ରିୟ ବିକିରଣ ଭାବରେ ଏହା କେତେକ ପଦାର୍ଥରୁ ନିର୍ଗତ ହୋଇଥାଏ । ଏଥିଯୋଗୁଁ ମୂଳ ମୌଳିକ ପଦାର୍ଥର ଶକ୍ତି ହ୍ରାସ ହୁଏ । ଗାମା ରଶ୍ମିର କୌଣସି ଚାର୍ଜ କିମ୍ବା ବସ୍ତୁତ୍ୱ ନାହିଁ । ଏକ୍ସ-ରଶ୍ମି ଗୁଣ ସହିତ ଏହାର ଗୁଣ ସମାନ । କେବଳ ଏହାର ଶକ୍ତି ଅଧିକ । ଏହା ଆଲୋକ ପରି ଏକ ବିଦ୍ୟୁତ୍ ଚୁମ୍ବକୀୟ ବିକିରଣ । ପ୍ରତ୍ୟେକ ତେଜସ୍କ୍ରିୟ ସମସ୍ଥାନିକ ପଦାର୍ଥର ନିଜର ବିଶେଷ ପ୍ରକାର ଗାମା ରଶ୍ମି ଶକ୍ତି ଥାଏ । ୧୨00 ମସିହାରେ ଫରାସୀ ବୈଜ୍ଞାନିକ ପଲ୍ ଭିଲାର୍ଡ ଏହାକୁ ଆବିଷ୍କାର କରିଥିଲେ ।

ସାଧାରଣତଃ ଆଲ୍‌ଫା କିମ୍ବା ବିଟା କଣିକା ନିର୍ଗତ ସହିତ ଗାମା ରଶ୍ମି ନିର୍ଗତ ହୋଇଥାଏ । ଗାମା ରଶ୍ମିର କୌଣସି ବସ୍ତୁତ୍ୱ କିମ୍ବା ଚାର୍ଜ ନ ଥିବାରୁ ଏହା ନାଭିକର ଗୁଣରେ କୌଣସି ପରିବର୍ତ୍ତନ ଆଣିନଥାଏ । ଏହା କେବଳ ନିର୍ଦ୍ଦିଷ୍ଟ ପରିମାଣର ବିକିରଣ ଶକ୍ତି (radiant energy) ହ୍ରାସ କରାଇଥାଏ । ଆଲ୍‌ଫା କିମ୍ବା ବିଟା କଣିକା ନିର୍ଗତ ପରେ ନାଭିକର ଅସ୍ଥିରତାକୁ ଲାଘବ କରିବା ପାଇଁ ଗାମା ରଶ୍ମି ନିର୍ଗତ ହୋଇଥାଏ । ମାତ୍ର ଅଳ୍ପ କେତେକ କ୍ଷେତ୍ରରେ ଗାମା ରଶ୍ମି ନିର୍ଗତ ନ ହୋଇ କେବଳ ଆଲ୍‌ଫା କିମ୍ବା ବିଟା କଣିକା ନିର୍ଗତ ହେଉଥିବାର ଜଣାପଡ଼ିଛି । ସେହିପରି କେତେକ କ୍ଷେତ୍ରରେ କେବଳ ଗାମା ରଶ୍ମି ମଧ୍ୟ ନିର୍ଗତ ହୁଏ ।

## (ଘ) ପଜିଟ୍ରନ୍ ବିକିରଣ

ପଜିଟ୍ରନ୍‌ରେ ଇଲେକ୍‌ଟ୍ରନ୍‌ର ସମସ୍ତ ଗୁଣ ଅଛି । କେବଳ ଏହା ହେଉଛି ଧନାତ୍ମକ ଚାର୍ଜ ବିଶିଷ୍ଟ । କେତେକ ତେଜସ୍କ୍ରିୟ ବସ୍ତୁ ପଜିଟ୍ରନ୍ ବିକିରଣ କରିଥାଆନ୍ତି । ଏହିପ୍ରକାର ଅବକ୍ଷୟରେ ପରମାଣୁର ନାଭିକରେ ଗୋଟିଏ ପ୍ରୋଟୋନ୍ ଗୋଟିଏ ନିଉଟ୍ରନ୍‌ରେ ପରିଣତ ହୋଇଥାଏ । ଫଳରେ ଗୋଟିଏ ପଜିଟ୍ରନ୍ ଓ ଗୋଟିଏ ନିଉଟ୍ରିନୋ ନିର୍ଗତ ହୋଇଥାଏ । ଏହାଦ୍ୱାରା ମୂଳ ମୌଳିକ ପଦାର୍ଥର

ପରମାଣୁରେ ପ୍ରୋଟୋନ୍ ସଂଖ୍ୟା ଗୋଟିଏ କମିଯାଏ ଏବଂ ଏହା ଏକ ନୂତନ ମୌଳିକ ପଦାର୍ଥରେ ପରିଣତ ହୋଇଯାଏ । ଏହାକୁ କେହି କେହି ବିଟା କଣିକା ନିର୍ଗତ ମଧ୍ୟ କହିଥାଆନ୍ତି । ସାଧାରଣ ଋଣାତ୍ମକ ବିଟା ରଶ୍ମି ନିର୍ଗତଠାରୁ ଏହାକୁ ଚିହ୍ନଟ କରିବା ପାଇଁ ଏହାକୁ ବିଟା-ଯୁକ୍ତ (beta-plus) ନିର୍ଗମନ କୁହାଯାଏ ।

### (ଙ) କେ-ଇଲେକ୍ଟ୍ରନ୍ ଅବକ୍ଷୟ

ଏହିପ୍ରକାର ଅବକ୍ଷୟରେ ନାଭିକ ଗୋଟିଏ ଇଲେକ୍ଟ୍ରନ୍‌କୁ ଧରି ନେଇ ଗୋଟିଏ ପ୍ରୋଟୋନ୍‌କୁ ନିଉଟ୍ରନ୍‌ରେ ପରିଣତ କରେ । ଫଳରେ ପରମାଣବିକ ସଂଖ୍ୟା ଏକ ହ୍ରାସ ପାଇ ନୂତନ ପରମାଣୁ ଗଠିତ ହୁଏ । ପରମାଣୁ କକ୍ଷରୁ ଗୋଟିଏ ଇଲେକ୍ଟ୍ରନ୍ ହଟିଯିବା ଦ୍ୱାରା ଏକ୍ସ-ରଶ୍ମି ନିର୍ଗତ ହୁଏ ଏବଂ ଫଳରେ ଏହି ପ୍ରକ୍ରିୟାକୁ ଜାଣିହୁଏ ।

### ଅର୍ଦ୍ଧ-ଜୀବନ କାଳ (Half-Life)

ପରମାଣୁ ଅବକ୍ଷୟ ପ୍ରକ୍ରିୟାରେ ଯେଉଁ ସମୟରେ ତେଜସ୍କ୍ରିୟ ମୌଳିକ ପଦାର୍ଥର ପରିମାଣ ମୂଳ ପରିମାଣର ଅଧା ହୋଇଯାଏ, ସେହି ସମୟକୁ ମୌଳିକ ପଦାର୍ଥର ଅର୍ଦ୍ଧ-ଜୀବନ କାଳ କୁହାଯାଏ । ବିଭିନ୍ନ ତେଜସ୍କ୍ରିୟ ମୌଳିକ ପଦାର୍ଥର ଅର୍ଦ୍ଧ-ଜୀବନ କାଳ ଅଲଗା ଅଲଗା, ମାତ୍ର ସୁନିର୍ଦ୍ଦିଷ୍ଟ । କେତେକ କ୍ଷେତ୍ରରେ ଏହା ଏକ ସେକେଣ୍ଡରୁ କମ୍ ହୋଇଥିବାବେଳେ ଅନ୍ୟ କେତେକ କ୍ଷେତ୍ରରେ ଏହା କୋଟି କୋଟି ବର୍ଷ ପର୍ଯ୍ୟନ୍ତ ହୋଇପାରେ । ଉଦାହରଣସ୍ୱରୂପ, ୟୁରାନିୟମ୍-238ର ଅର୍ଦ୍ଧ-ଜୀବନ କାଳ 450 କୋଟି ବର୍ଷ ହୋଇଥିବାବେଳେ ପୋଲୋନିୟମ୍-214 କ୍ଷେତ୍ରରେ ଏହା ହେଉଛି ମାତ୍ର 0.00002 ସେକେଣ୍ଡ ।

### କୃତ୍ରିମ ତେଜସ୍କ୍ରିୟତା

ପର୍ଯ୍ୟାୟ ସାରଣୀରେ ବିସ୍‌ମଥ୍ ପରବର୍ତ୍ତୀ ସମସ୍ତ ମୌଳିକ ପଦାର୍ଥର ସମସ୍ଥାନିକ ହେଉଛି ତେଜସ୍କ୍ରିୟ ଏବଂ ପ୍ରାକୃତିକଭାବେ ବିସ୍‌ମଥ୍, ଥାଲିୟମ୍, ଭାନାଡିୟମ୍, ଇଣ୍ଡିୟମ୍, ନିଓଡାଇମିୟମ୍, ଗାଡୋଲିନିୟମ୍, ହାଫନିୟମ୍, ପ୍ଲାଟିନମ୍, ସୀସା, ରେଡିୟମ୍, ଲୁଟେନିୟମ୍, ରୁବିଡିୟମ୍, ପୋଟାସିୟମ୍, ଉଦଜାନ, କାର୍ବନ୍, ଲାନ୍ଥାନମ୍ ଓ ସମରିୟମ୍ ଆଦି ମୌଳିକ ପଦାର୍ଥର ତେଜସ୍କ୍ରିୟ ସମସ୍ଥାନିକ ଅଛି ।

୧୯୧୯ ମସିହାରେ ରୁଥରଫୋର୍ଡ ସାଧାରଣ ଯବକ୍ଷାରଜାନ ପରମାଣୁ ସହିତ ଆଲ୍‌ଫା କଣିକା ସଂଘର୍ଷ କରାଇ ଦେଖିଲେ ଯେ ଏହାର ନାଭିକ ଆଲ୍‌ଫା କଣିକା ଗ୍ରହଣ କରି ଏକ ସ୍ଥିର ଅମ୍ଳଜାନ-17 ସମସ୍ଥାନିକରେ ପରିଣତ ହେଲା ଏବଂ ଏହି ପ୍ରକ୍ରିୟାରେ ଗୋଟିଏ ପ୍ରୋଟୋନ୍ ନିର୍ଗତ ହେଲା । ପ୍ରତିକ୍ରିୟାଟି ନିମ୍ନରେ ଦିଆଗଲା ।

$$_7N^{14} + {}_2He^4 \rightarrow {}_8O^{17} + {}_1H^1$$

ଏଠାରେ ଆଲ୍‌ଫା କଣିକାକୁ ହିଲିୟମ୍ ଓ ପ୍ରୋଟୋନ୍‌କୁ ଉଦଜାନ ପରମାଣୁ ଭାବରେ ଦର୍ଶାଯାଇଛି ।

ଫରାସୀ ରସାୟନ ବିଜ୍ଞାନୀ ଆଇରିନ୍ ଓ ଫ୍ରେଡେରିକ୍ ଜୋଲିଏଟ୍ କ୍ୟୁରି ୧୯୩୩ ମସିହାରେ ପ୍ରଥମେ କୃତ୍ରିମ ତେଜସ୍କ୍ରିୟ ପଦାର୍ଥ ପ୍ରସ୍ତୁତ କଲେ । ସେମାନେ ଆଲୁମିନିୟମ୍ ସହ ଆଲ୍‌ଫା କଣିକା ସଂଘର୍ଷ କରାଇ ଗନ୍ଧକ (ଫସଫରସ୍)ର ଏକ ସମସ୍ଥାନିକ ପାଇଲେ । ଏହି ସମସ୍ଥାନିକଟି ତେଜସ୍କ୍ରିୟ ଥିଲା ଏବଂ ପଜିଟ୍ରନ୍ ନିର୍ଗତ କରି କ୍ଷୟପ୍ରାପ୍ତ ହେଲା । ଏହାର ଅର୍ଦ୍ଧ-ଜୀବନ କାଳ କମ୍ ଥିଲା । ସେମାନେ ମଧ୍ୟ ବୋରୋନ୍‌ରୁ ଯବକ୍ଷାରଜାନର ସମସ୍ଥାନିକ ଓ ମାଗ୍ନେସିୟମ୍‌ରୁ ଆଲୁମିନିୟମ୍‌ର ସମସ୍ଥାନିକ ପ୍ରସ୍ତୁତ କରିଥିଲେ । କୃତ୍ରିମ ତେଜସ୍କ୍ରିୟତା ଆବିଷ୍କାର ପାଇଁ ଦୁହିଁଙ୍କୁ ୧୯୩୫ ମସିହାରେ ନୋବେଲ ପୁରସ୍କାର ପ୍ରଦାନ କରାଯାଇଥିଲା । ଏହାପର ଠାରୁ ଅନେକ କୃତ୍ରିମ ସମସ୍ଥାନିକ ଉଦ୍ଭାବିତ ହେଲାଣି । ପର୍ଯ୍ୟାୟ ସାରଣୀର ପ୍ରାୟ ପ୍ରତ୍ୟେକ ମୌଳିକ ପଦାର୍ଥରେ ଆଲ୍‌ଫା କଣିକା, ପ୍ରୋଟୋନ୍, ନିଉଟ୍ରନ୍ ଓ ଡିଉଟ୍ରନ୍ ସଂଘର୍ଷ କରାଇବା ଦ୍ୱାରା ପ୍ରାୟ ଚାରି ଶହରୁ ଅଧିକ କୃତ୍ରିମ ତେଜସ୍କ୍ରିୟ ବସ୍ତୁ ମିଳିଲାଣି ।

କୃତ୍ରିମ ତେଜସ୍କ୍ରିୟ ବସ୍ତୁ ମାନବ ସମାଜର ଅନେକ କାମରେ ଆସୁଛି । ଏହା କୃଷି, ସ୍ୱାସ୍ଥ୍ୟ, କଳ କାରଖାନାରେ ବ୍ୟବହୃତ ହେଉଛି । କାର୍ବନ୍-14 ସମସ୍ଥାନିକ ଦ୍ୱାରା ପୁରାତନ ପଦାର୍ଥମାନଙ୍କ କାଳ ନିରୂପଣ କରାଯାଇପାରୁଛି ।

# ଆଣବିକ ବିଭାଜନ

ବଡ଼ ଅସ୍ଥିର ନାଭିକଗୁଡ଼ିକ ଆପେ ଆପେ ଛୋଟ ନାଭିକରେ ଭାଙ୍ଗିଯିବାର ପ୍ରବୃତ୍ତି ଅଛି । କୃତ୍ରିମ ଉପାୟରେ ମଧ୍ୟ ଅତି ଛୋଟ କଣିକା ସହ ସଂଘର୍ଷ କରାଇ ଏଗୁଡିକୁ ଛୋଟ ଛୋଟ ନାଭିକରେ ବିଭାଜନ କରାଯାଇ ପାରିବ । ଗୋଟିଏ ପରମାଣୁର ଏହିପରି ଭାବେ ଭାଗ ଭାଗ କରିବାକୁ ଆଣବିକ ବିଭାଜନ (nuclear fission) କୁହାଯାଏ । ଜର୍ମାନୀର ରସାୟନ ବିଜ୍ଞାନୀ ଅଟ୍ଟୋ ହାନ୍ ୧୯୩୮ ମସିହାରେ ପ୍ରଥମେ ୟୁରାନିୟମ୍ ପରମାଣୁ ସହ ନିଉଟ୍ରନ୍ ସଂଘର୍ଷ କରି ଆଣବିକ ବିଭାଜନ କରିଥିଲେ । ସେଥିପାଇଁ ତାଙ୍କୁ 1944 ମସିହାରେ ରସାୟନ ବିଜ୍ଞାନରେ ନୋବେଲ୍ ପୁରସ୍କାର ପ୍ରଦାନ କରାଯାଇଥିଲା ।

ନାଭିକକୁ ଆମେ କାହିଁକି ବିଭାଜନ କରୁଛେ ? ଏହି ବିଭାଜନରୁ ପ୍ରଚୁର ଶକ୍ତି ମିଳିଥାଏ । ଉଦାହରଣସ୍ୱରୂପ, ୟୁରାନିୟମ୍ ନାଭିକକୁ ନିଉଟ୍ରନ୍ ସହ ସଂଘର୍ଷ କରି ଏହାକୁ ଦୁଇଟି ଛୋଟ ନାଭିକ କ୍ରିପଟନ୍ ଓ ବେରିୟମ୍‌ରେ ଭାଗ କରାଯାଏ ।




[ଚିତ୍ର-41: ଆଣବିକ ବିଭାଜନ]

ଏହି ପ୍ରକ୍ରିୟାରେ କେତୋଟି ନିଉଟ୍ରନ୍ ନିର୍ଗତ ହେବା ସହ ଆଇନଷ୍ଟାଇନ୍‌ଙ୍କ ବସ୍ତୁ-ଶକ୍ତି ସମୀକରଣ ଅନୁଯାୟୀ ପ୍ରଚୁର ଶକ୍ତି ନିର୍ଗତ ହୋଇଥାଏ ।

ବୈଜ୍ଞାନିକମାନେ ପରମାଣୁକୁ କିପରି ଭାଙ୍ଗନ୍ତି ? ସାଧାରଣତଃ ନିଉଟ୍ରନ୍, ପ୍ରୋଟୋନ୍ କିମ୍ବା ଆଲ୍‌ଫା କଣିକାକୁ ଏଥିପାଇଁ ବ୍ୟବହାର କରାଯାଏ । ଏହି କଣିକାଗୁଡ଼ିକ ଏକପ୍ରକାର ପରମାଣୁ ବୁଲେଟ୍ ବା ଗୁଳି ଭଳି ବ୍ୟବହୃତ ହୁଏ । ଏଥିମଧ୍ୟରୁ ନିଉଟ୍ରନ୍ ହେଉଛି ଉତ୍ତମ ପରମାଣୁ-ବୁଲେଟ୍, କାରଣ ଏହାର କୌଣସି ବୈଦ୍ୟୁତିକ ଚାର୍ଜ ନାହିଁ । ଏହି କାରଣରୁ ଏହା ପ୍ରୋଟୋନ୍ ଓ ଆଲ୍‌ଫା କଣିକା ଅପେକ୍ଷା ଅତି ସହଜରେ ଧନାତ୍ମକ ଚାର୍ଜ ନାଭିକରେ ପ୍ରବେଶ କରି ତାକୁ ଭାଙ୍ଗି ଦେଇଥାଏ ।

ଅନ୍ୟପକ୍ଷରେ ଯଦି ଧନାତ୍ମକ ଚାର୍ଜ ବିଶିଷ୍ଟ ପ୍ରୋଟୋନ୍ କିମ୍ବା ଆଲ୍‌ଫା କଣିକା ବ୍ୟବହୃତ ହୁଏ, ଏଗୁଡ଼ିକ ଧନାତ୍ମକ ଚାର୍ଜବିଶିଷ୍ଟ ନାଭିକଦ୍ୱାରା ବିକର୍ଷିତ ହେବେ । ଅବଶ୍ୟ କେତେକ କ୍ଷେତ୍ରରେ ପ୍ରୋଟୋନ୍ ଓ ଆଲ୍‌ଫା କଣିକାକୁ ପରମାଣୁ-ବୁଲେଟ୍ ଭାବେ ବ୍ୟବହାର କରିବା ଜରୁରୀ ହୋଇଥାଏ । ଏହି କ୍ଷେତ୍ରରେ ନାଭିକରେ ପ୍ରବେଶ ପୂର୍ବରୁ କଣିକାଗୁଡ଼ିକୁ ଅତି ଦ୍ରୁତ ବେଗରେ ଗତି କରାଇବାକୁ ହୋଇଥାଏ । କଣିକାଗୁଡ଼ିକର ବେଗକୁ ବଢାଇବା ପାଇଁ କଣିକାତ୍ୱରକ ବା ସାଇକ୍ଲୋଟ୍ରୋନ୍ (cyclotron) ନାମକ ଯନ୍ତ୍ର ବ୍ୟବହାର କରାଯାଇଥାଏ ।

ଦୁଇଟି ଫମ୍ପା ଅର୍ଦ୍ଧବୃତ୍ତାକାର ଧାତବ ବାକ୍ସ $D_1$ ଓ $D_2$ (ଚିତ୍ର-42)କୁ ନେଇ ସାଇକ୍ଲୋଟ୍ରୋନ୍ ଗଠିତ । ବାକ୍ସ ଦୁଇଟିକୁ 'ଡ଼ିସ୍' କୁହାଯାଏ । ଗୋଟିଏ ଭାକ୍ୟୁମ୍ କୋଠରୀ C ଭିତରେ ବାକ୍ସ ଦୁଇଟି ଥାଏ । ଏହି ଭାକ୍ୟୁମ୍ କୋଠରିଟି ଗୋଟିଏ ବିଦ୍ୟୁତ୍ ଚୁମ୍ବକର ଦୁଇ ମେରୁ ମଧ୍ୟରେ ରହିଥାଏ । ବିଦ୍ୟୁତ୍ ଚୁମ୍ବକରେ ସୃଷ୍ଟି ହେଉଥିବା ଚୁମ୍ବକୀୟ କ୍ଷେତ୍ର ଧାତବ ବାକ୍ସ ପ୍ରତି ସମକୋଣରେ ଯାଇଥାଏ ଏବଂ ଏହାର କେନ୍ଦ୍ରରେ ଏହା ସମାନଭାବେ (uniform) ଥାଏ । ବାକ୍ସ ଦୁଇଟି ଗୋଟିଏ ଦୋଳକ (oscillator) ସହ ସଂପୃକ୍ତ ହୋଇଥାଏ । ଦୋଳକଟି ଉଚ୍ଚ ଆବୃତ୍ତିରେ (high frequency) ଦୋଳାୟିତ ହୋଇଥାଏ । ଫଳରେ ଏହା ଚୁମ୍ବକୀୟ ରେଖାକୁ କାଟୁଥିବାରୁ ଫାରାଡେଙ୍କ ବିଦ୍ୟୁତ୍ ଚୁମ୍ବକୀୟ ପ୍ରେରଣ (electromagnetic induction) ନିୟମ ଅନୁଯାୟୀ ଧାତବ ବାକ୍ସରେ ପ୍ରତ୍ୟାବର୍ତ୍ତୀ (alternating) ବିଦ୍ୟୁତ୍

ବିଭବ ସୃଷ୍ଟି ହୁଏ । ଗୋଟିଏ ବାକ୍ସ ଧନାତ୍ମକ ଚାର୍ଜ ହେଲେ ଅନ୍ୟଟି ଋଣାତ୍ମକ ଚାର୍ଜ ହୋଇଥାଏ । ଦୋଳକର ଆବୃତ୍ତି ଅନୁଯାୟୀ ବାକ୍ସ ଦ୍ୱୟର ଚାର୍ଜ ମଧ୍ୟ ଧନାତ୍ମକ ଓ ଋଣାତ୍ମକ ଭାବେ ବଦଳୁଥାଏ । ଅନ୍ୟ ଅର୍ଥରେ ବାକ୍ସ ଦୁଇଟି ବିଦ୍ୟୁତ୍‌ଅଗ୍ର (electrode) ଭାବେ କାର୍ଯ୍ୟ କାରିଥାଏ ।

ଦୁଇ ବାକ୍ସ ମଝିରେ (S) ଧନାତ୍ମକ ଆୟନ୍ ସୃଷ୍ଟି କରାଯାଏ । ମନେକର ଏହି ଆୟନ୍ ସୃଷ୍ଟିବେଳେ $D_1$ ରେ ଋଣାତ୍ମକ ଚାର୍ଜ ଅଛି । ଫଳରେ ଆୟନ୍ ଏହା ଆଡକୁ ଗତି କରିଥାଏ । ଏହା ଭିତରକୁ ଯିବାପରେ ଚୁମ୍ବକୀୟ କ୍ଷେତ୍ର ପ୍ରଭାବରେ ଏହା ବୃତ୍ତୀୟ ପଥରେ ଗତି କରିଥାଏ । ଏହି ସମୟରେ ଏହା ଉପରେ ବିଦ୍ୟୁତ୍ କ୍ଷେତ୍ର କୌଣସି ପ୍ରକାର ପ୍ରଭାବ ପକାଇ ନଥାଏ । ଯଦି $D_1$ ରୁ ଏହା ବାହାରିବାବେଳେ $D_2$ ଋଣାତ୍ମକ ହୋଇଯାଏ, ତାହା ହେଲେ ଆୟନ୍ $D_1$ ରୁ $D_2$ କୁ ତ୍ୱରିତ ହୁଏ । ଏହା $D_2$ ଭିତରେ ଗୋଟିଏ ବଡ଼ ବ୍ୟାସାର୍ଦ୍ଧ ବିଶିଷ୍ଟ ବୃତ୍ତରେ ଗତି କରିଥାଏ । $D_2$ ରୁ ବାହାରିବା ବେଳେ ପୁନଶ୍ଚ $D_1$ ଋଣାତ୍ମକ ହୋଇଯାଏ ଏବଂ ଆୟନ୍ $D_1$ ଭିତରକୁ ଯାଇଥାଏ । ଏହିପରି ଏହା ଗୋଟିଏ ବାକ୍ସରୁ ଅନ୍ୟ ବାକ୍ସକୁ ଯାଉଥାଏ । ମାତ୍ର ଆୟନ୍ ବାକ୍ସର ପରିଧିରେ ପହଞ୍ଚିଗଲେ ଋଣାତ୍ମକ ବିଭବ ଥିବା ଗୋଟିଏ ବିକ୍ଷେପଣ ପ୍ଲେଟ୍ (deflecting plate) P ଦ୍ୱାରା ଆକର୍ଷିତ ହୋଇ ଲକ୍ଷ୍ୟସ୍ଥଳ (target) ସହ ସଂଘର୍ଷ ଘଟାଏ । ସଂକ୍ଷେପରେ କହିଲେ, ଚୁମ୍ବକୀୟ କ୍ଷେତ୍ର ଆୟନ୍‌କୁ ବୃତ୍ତାକାର ପଥରେ ଯିବା ପାଇଁ ଦିଗ୍‌ଦର୍ଶନ (guidance) ଦିଏ ଏବଂ ବୈଦ୍ୟୁତିକ ବଳ ଏହାର ବେଗକୁ ବୃଦ୍ଧି କରିଥାଏ । ଫଳରେ ଆୟନ୍ ପଥ ଗୋଟିଏ ଆବର୍ତ୍ତକ (spiral) ର ରୂପ ନେଇଥାଏ ।

# ଶୃଙ୍ଖଳ ପ୍ରତିକ୍ରିୟା

ଆମେ ଜାଣିଛେ ଯେ ଯେତେବେଳେ ଗୋଟିଏ ୟୁରାନିୟମ୍ ପରମାଣୁ ସହ ଗୋଟିଏ ନିଉଟ୍ରନ୍‌ର ସଂଘର୍ଷ ହୁଏ, ୟୁରାନିୟମ୍ ପରମାଣୁ ଦୁଇଟି ଛୋଟ ପାରମାଣୁରେ ଭାଗ ହୋଇଯାଏ ଏବଂ ଏହି ପ୍ରକ୍ରିୟାରେ କେତୋଟି ନିଉଟ୍ରନ୍ ଓ ପ୍ରଚୁର ଶକ୍ତି ନିର୍ଗତ ହୁଏ ।

ୟୁରାନିୟମ୍ + ନିଉଟ୍ରନ୍ = କ୍ରିପ୍‌ଟନ୍ + ବେରିୟମ୍ + 3 ନିଉଟ୍ରନ୍ + ଶକ୍ତି




[ଚିତ୍ର-43: ଶୃଙ୍ଖଳ ପ୍ରତିକ୍ରିୟା]

ଯଦି ଏହା ପାଖରେ ଅନେକଗୁଡିଏ ୟୁରାନିୟମ୍ ପରମାଣୁ ଅଛି, ତାହାହେଲେ କ'ଣ ହେବ ? ପ୍ରଥମ ୟୁରାନିୟମ୍ ପରମାଣୁ ବିଭାଜନରୁ ନିର୍ଗତ ନିଉଟ୍ରନ୍‌ଗୁଡିକ ନିକଟରେ ଥିବା ଅନ୍ୟ କେତୋଟି ପରମାଣୁ ସହ ସଂଘର୍ଷ କରିବ । ଫଳରେ ସେହି ପରମାଣୁଗୁଡିକର ବିଭାଜନ ହେବା ସଙ୍ଗେ ସଙ୍ଗେ ଆହୁରି କେତେକ ନିଉଟ୍ରନ୍ ନିର୍ଗତ ହେବ । ଏହି ନିଉଟ୍ରନ୍‌ଗୁଡିକ ପୁନଶ୍ଚ ଆହୁରି କେତେକ ୟୁରାନିୟମ୍ ପରମାଣୁ ସହ ସଂଘର୍ଷ ହେବ । ଏହିପରି ଭାବରେ ଏହି ଦ୍ରୁତ ପ୍ରକ୍ରିୟାର ବାରମ୍ବାର ପୁନରାବୃତ୍ତି ହୋଇଥାଏ ଏବଂ ଅତି ଅଳ୍ପ ସମୟ ମଧ୍ୟରେ ଲକ୍ଷ ଲକ୍ଷ ୟୁରାନିୟମ୍ ପରମାଣୁର ବିଭାଜନ ହୋଇଯାଇଥାଏ । ଏହାକୁ ଶୃଙ୍ଖଳ ପ୍ରତିକ୍ରିୟା (chain reaction) କୁହାଯାଏ ।

ଶୃଙ୍ଖଳ ପ୍ରତିକ୍ରିୟାକୁ ତା' ନିଜ ବାଟରେ ଛାଡିଦେଲେ ଏଥିରୁ ଏତେ ପରିମାଣର ଶକ୍ତି ନିର୍ଗତ ହେବ ଯେ ତାକୁ ନିୟନ୍ତ୍ରଣ କରିବା ଅସମ୍ଭବ ହେବ । ପରମାଣୁ ବୋମା ଏହି ନିୟମରେ କାର୍ଯ୍ୟ କରିଥାଏ ।

ସୌଭାଗ୍ୟବଶତଃ, ଶୃଙ୍ଖଳ ପ୍ରତିକ୍ରିୟାକୁ କିପରି ମନ୍ଥର କରି ନିୟନ୍ତ୍ରଣ କରିହେବ, ତାହା ବୈଜ୍ଞାନିକମାନେ ଜାଣି ପାରିଛନ୍ତି । ଏହାକୁ ଗୋଟିଏ ଆଣବିକ ରିଆକ୍ଟର ବା ଚୁଲ୍ଲୀରେ ନିୟନ୍ତ୍ରଣ କରାଯାଏ । ଏହାକୁ ନିୟନ୍ତ୍ରଣ କରିବା ପାଇଁ ମନ୍ଦକ (moderator) ବ୍ୟବହାର କରାଯାଏ । ଗ୍ରାଫାଇଟ୍ (କାର୍ବନ୍‌ର ଏକ ରୂପ) ହେଉଛି ଗୋଟିଏ ଉତ୍ତମ ମନ୍ଦକ । ଆଣବିକ ରିଆକ୍ଟରରେ ୟୁରାନିୟମ୍ ଦଣ୍ଡ ଚାରିପଟେ ଗ୍ରାଫାଇଟ୍ ରଖାଯାଇଥାଏ । ଗ୍ରାଫାଇଟ୍ ଆଣବିକ ବିଭାଜନରୁ ନିର୍ଗତ ନିଉଟ୍ରନ୍‌ର ବେଗକୁ ହ୍ରାସ କରିଦିଏ । ପୁନଶ୍ଚ ଅଧିକ ନିୟନ୍ତ୍ରଣ ପାଇଁ ନିଉଟ୍ରନ୍ ଗ୍ରହଣକାରୀ ବସ୍ତୁରୁ ନିର୍ମିତ ଦଣ୍ଡକୁ ଆଣବିକ ରିଆକ୍ଟର ମଧ୍ୟକୁ ପ୍ରବେଶ କରାଯାଇଥାଏ ।

# ଆଣବିକ ସଂଯୋଜନ

ଅନ୍ୟ ଏକ ଉପାୟରେ ମଧ୍ୟ ଆଣବିକ ଶକ୍ତି ଆହରଣ କରିହେବ । ଏହା ହେଉଛି ଆଣବିକ ସଂଯୋଜନ (nuclear fusion) । ଏଥିରେ କୌଣସି ଅସ୍ଥିର ନାଭିକର ବିଭାଜନ ଦରକାର ହୁଏ ନାହିଁ । ଦୁଇଟି ହାଲୁକା ନାଭିକକୁ ଏକାଠି କରି ଗୋଟିଏ ବଡ଼ ନାଭିକରେ ପରିଣତ କରି ମଧ୍ୟ ଶକ୍ତି ଉତ୍ପାଦନ କରିହେବ । ଏହା ମଧ୍ୟ ଆଇନ୍‌ଷ୍ଟାଇନ୍‌ଙ୍କ ବସ୍ତୁ-ଶକ୍ତି ସମୀକରଣ ଅନୁଯାୟୀ କାମ କରିଥାଏ । ଦୁଇଟି ନାଭିକକୁ ମିଶାଇ ଗୋଟିଏ ନାଭିକରେ ପରିଣତ କଲେ, ନୂତନ ନାଭିକର ବସ୍ତୁତ୍ୱ ପୂର୍ବର ଦୁଇ ନାଭିକର ବସ୍ତୁତ୍ୱର ସମଷ୍ଟିଠାରୁ ସାମାନ୍ୟ କମ୍ ହୋଇଥାଏ । ଏହି ବସ୍ତୁତ୍ୱ ପାର୍ଥକ୍ୟ ଆଇନ୍‌ଷ୍ଟାଇନ୍‌ଙ୍କ ସୂତ୍ର ଅନୁଯାୟୀ ଶକ୍ତିରେ ପରିଣତ ହୋଇଥାଏ ।




[ଚିତ୍ର-44: ଆଣବିକ ସଂଯୋଜନ ପ୍ରକ୍ରିୟା]

ଉଦଜାନର ଦୁଇଟି ସମସ୍ଥାନିକ ହେଉଛି ଡ଼ିଉଟେରିୟମ୍ (ନାଭିକରେ ଗୋଟିଏ ପ୍ରୋଟୋନ୍ ଓ ଗୋଟିଏ ନିଉଟ୍ରନ୍) ଏବଂ ଟ୍ରିଟିୟମ୍ (ନାଭିକରେ ଗୋଟିଏ ପ୍ରୋଟୋନ୍ ଓ ଦୁଇଟି ନିଉଟ୍ରନ୍) । ଏହି ଦୁଇଟିର ସଂଯୋଗରେ ହିଲିୟମ୍ ନାଭିକ ଓ ଗୋଟିଏ ନିଉଟ୍ରନ୍ ସୃଷ୍ଟି ହେବା ସହ ପ୍ରଚୁର ଶକ୍ତି ଉତ୍ପନ୍ନ ହୋଇଥାଏ ।

ଡ଼ିଉଟେରିୟମ୍ + ଟ୍ରିଟିୟମ୍ → ହିଲିୟମ୍-4 + ନିଉଟ୍ରନ୍ + ଶକ୍ତି

ଆଣବିକ ସଂଯୋଜନ ପ୍ରକ୍ରିୟାରେ ଶକ୍ତି ଉତ୍ପାଦନ ପାଇଁ ଗୋଟିଏ ଅସୁବିଧା ଅଛି । ଦୁଇଟି ଧନାତ୍ମକ ନାଭିକ ପରସ୍ପରକୁ ବିକର୍ଷଣ କରିବେ । ଏଣୁ ଏହି ଦୁଇଟିକୁ ଏକାଠି କରି ସଂଯୋଜନ କରିବା ପାଇଁ 30,000,000 ଡ଼ିଗ୍ରୀ ସେଲ୍‌ସିୟସ୍‌ରୁ ଅଧିକ ତାପମାତ୍ରା ଦରକାର । ଏହି ତାପମାତ୍ରାକୁ କୌଣସି ପାତ୍ର ସହ୍ୟ କରିପାରିବ ନାହିଁ ଏବଂ ଯେଉଁ ଧାତୁ ଏଥିପାଇଁ ବ୍ୟବହାର କଲେ ମଧ୍ୟ ତାହା ତରଳିଯିବ । ଅବଶ୍ୟ ଏଥିପାଇଁ ଚେଷ୍ଟା ଚାଲିଛି ।

ସୂର୍ଯ୍ୟ ଓ ଅନ୍ୟ ନକ୍ଷତ୍ରରେ ତାପମାତ୍ରା ଅତ୍ୟଧିକ ହୋଇଥିବାରୁ ସେଠାରେ ଆଣବିକ ସଂଯୋଜନ ପ୍ରକ୍ରିୟାରେ ଉଦଜାନ ପରମାଣୁ ହିଲିୟମ୍ ପରମାଣୁରେ ପରିଣତ ହୋଇଥାଏ ଏବଂ ଏହି ପ୍ରକ୍ରିୟାରେ ପ୍ରଚୁର ଶକ୍ତି ଉତ୍ପନ୍ନ ହୋଇଥାଏ । ସୂର୍ଯ୍ୟର ଏହି ଶକ୍ତିରୁ ଆମେ ଆଲୋକ ଓ ତାପ ପାଇଥାଉ ।

ଆଣବିକ ସଂଯୋଜନ ପ୍ରକ୍ରିୟାରେ ଉଦଜାନ ବୋମା ନିର୍ମାଣ କରାଯାଇଛି । ଏହା ହେଉଛି ଅନିୟନ୍ତ୍ରିତ ଆଣବିକ ସଂଯୋଜନ । ମନୁଷ୍ୟ ଉଦ୍ଭାବନ କରିଥିବା ଯୁଦ୍ଧାସ୍ତ୍ର ମଧ୍ୟରେ ଏହା ହେଉଛି ସବୁଠାରୁ ମାରାତ୍ମକ । କିନ୍ତୁ ଆଣବିକ ସଂଯୋଜନ ପ୍ରକ୍ରିୟାକୁ ନିୟନ୍ତ୍ରଣ କରି ମାନବ ସେବାରେ ଲଗାଇ ପାରିଲେ ପୃଥିବୀର ଶକ୍ତି ସମସ୍ୟା ଦୂର ହୋଇପାରିବ ।

# ଆଣବିକ ବିଦ୍ୟୁତ୍ ଉତ୍ପାଦନ

ଆଣବିକ ବିଭାଜନ ପ୍ରକ୍ରିୟାରେ ଉତ୍ପନ୍ନ ତାପଶକ୍ତିକୁ ବ୍ୟବହାର କରି ବିଦ୍ୟୁତ୍ ଉତ୍ପାଦନ କରାଯାଉଛି । ଏହା ହେଉଛି ପରିବେଶ ପ୍ରଦୂଷଣ ମୁକ୍ତ । ଆଣବିକ ବିଦ୍ୟୁତ୍ କେନ୍ଦ୍ରର ମୁଖ୍ୟ ଯନ୍ତ୍ରଗୁଡିକ ହେଉଛି ଆଣବିକ ରିଆକ୍ଟର, ବଏଲର୍ ବା ବାଷ୍ପ ଉତ୍ପାଦକ, ଟରବାଇନ୍ ଓ ଜେନେରେଟର୍ । ଆଣବିକ ରିଆକ୍ଟରରେ ପରମାଣୁର (ୟୁରାନିୟମ୍-235) ବିଭାଜନ କରାଯାଏ । ୟୁରାନିୟମ୍ର ଅନେକ ସମସ୍ଥାନିକ ଅଛି । ସେଥିମଧ୍ୟରୁ ଦୁଇଟି ମୁଖ୍ୟ ହେଉଛି ୟୁରାନିୟମ୍-235 (ବସ୍ତୁତ୍ୱ ସଂଖ୍ୟା 235) ଓ ୟୁରାନିୟମ୍-238 (ବସ୍ତୁତ୍ୱ ସଂଖ୍ୟା 238) । ୟୁରାନିୟମ୍- 238 ଅପେକ୍ଷା ୟୁରାନିୟମ୍-235 ହେଉଛି କମ୍ ଅସ୍ଥିର । ଏଣୁ ୟୁରାନିୟମ୍-235ର ବିଭାଜନ ପ୍ରକ୍ରିୟାରେ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରାଯାଇଥାଏ । ଏଠାରେ ତାପ ଆକାରରେ ଶକ୍ତି ଉତ୍ପାଦିତ ହୁଏ । ମନ୍ଦକ ଭାବେ ଗ୍ରାଫାଇଟ୍ କିମ୍ବା ଭାରିଜଳ ବ୍ୟବହୃତ ହୁଏ । ଏହାଦ୍ୱାରା ଶୃଙ୍ଖଳ ପ୍ରତିକ୍ରିୟା ବେଗକୁ ନିୟନ୍ତ୍ରଣ କରି ନିର୍ଦ୍ଦିଷ୍ଟ ପରିମାଣର ତାପ ଶକ୍ତି ଉତ୍ପନ୍ନ କରାଯାଏ । ଏହି ତାପକୁ ଗୋଟିଏ ତରଳ ଧାତୁରେ




[ଚିତ୍ର-45: ଆଣବିକ ବିଦ୍ୟୁତ୍ କେନ୍ଦ୍ର]

ଗ୍ରହଣ କରାଯାଏ (ତରଳ ଧାତୁକୁ ଏହି ତାପଦ୍ୱାରା ଉତ୍ତପ୍ତ କରାଯାଏ) । ତରଳ ଧାତୁର ତାପରେ ବଏଲରରେ ଥିବା ଜଳ ବାଷ୍ପରେ ପରିଣତ ହୋଇଥାଏ । ବାଷ୍ପଦ୍ୱାରା ଟରବାଇନ୍ ଓ ଜେନେରେଟରକୁ ଘୂରାଇ ବିଦ୍ୟୁତ୍ ଉତ୍ପାଦନ କରାଯାଏ ।

1951 ମସିହାରେ ଯୁକ୍ତରାଷ୍ଟ୍ର ଆମେରିକାର ଇଡ଼ାହୋଠାରେ ପ୍ରଥମ ଆଣବିକ ବିଦ୍ୟୁତ୍ କେନ୍ଦ୍ର ସ୍ଥାପିତ ହୋଇଥିଲା । 2014 ମସିହା ଅଗଷ୍ଟ ମାସ ସୁଦ୍ଧା 31ଟି ଦେଶରେ 435ଟି ଆଣବିକ ରିଆକ୍‌ଟରରୁ 375303 ମେଗାୱାଟ୍ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରାଯାଉଛି । ଏହା ହେଉଛି ପୃଥିବୀରେ ସମସ୍ତ ଉତ୍ସରୁ ଉତ୍ପାଦିତ ବିଦ୍ୟୁତ୍ ଶକ୍ତିର 11 ପ୍ରତିଶତ ।

ଆମ ଦେଶରେ 20ଟି ରିଆକ୍‌ଟରରୁ 4780 ମେଗାୱାଟ୍ ବିଦ୍ୟୁତ୍ ଶକ୍ତି ଉତ୍ପାଦିତ ହେଉଛି । ଆମର ପାରମ୍ପରିକ ଶକ୍ତି ଉତ୍ସ କୋଇଲା ଓ ପେଟ୍ରୋଲିୟମ୍ ତୈଳ କ୍ରମଶଃ ନିଃଶେଷ ହେଉଛି । ଏଣୁ ଭବିଷ୍ୟତରେ ଆଣବିକ ବିଦ୍ୟୁତ୍ ଶକ୍ତି ବିଦ୍ୟୁତ୍ ଉତ୍ପାଦନର ମୁଖ୍ୟ ଉତ୍ସ ହେବ । ସାରଣୀ-4ରେ ଭାରତର ଆଣବିକ ବିଦ୍ୟୁତ୍ କେନ୍ଦ୍ରଗୁଡିକର ନାମ ଓ କ୍ଷମତା ଦର୍ଶାଯାଇଛି ଏବଂ ସାରଣୀ-5ରେ ନିର୍ମାଣାଧୀନ ଆଣବିକ ବିଦ୍ୟୁତ୍ କେନ୍ଦ୍ରଗୁଡ଼ିକର ତାଲିକା ଦିଆଯାଇଛି ।



[ଚିତ୍ର-46: କାଇଗା ଆଣବିକ ବିଦ୍ୟୁତ୍ କେନ୍ଦ୍ର]

## ସାରଣୀ-4
### ଭାରତର ଆଣବିକ ବିଦ୍ୟୁତ୍ କେନ୍ଦ୍ର

| କ୍ରମିକ ସଂଖ୍ୟା | ବିଦ୍ୟୁତ୍ କେନ୍ଦ୍ର ନାମ | ରାଜ୍ୟ | ରିଆକ୍ଟର ସଂଖ୍ୟା | ମୋଟକ୍ଷମତା (ମେଗାୱାଟ୍) |
|---|---|---|---|---|
| 1 | ତାରାପୁର | ମହାରାଷ୍ଟ୍ର | 4 | 1400 |
| 2 | କୋଟା | ରାଜସ୍ଥାନ | 6 | 1180 |
| 3 | କାଲ୍ପାକମ୍ | ତାମିଲନାଡୁ | 2 | 440 |
| 4 | କାଇଗା | କର୍ଣ୍ଣାଟକ | 4 | 880 |
| 5 | ନାରୋରା | ଉତ୍ତରପ୍ରଦେଶ | 2 | 440 |
| 6 | କାକ୍ରାପର | ଗୁଜରାଟ | 2 | 440 |
| | ମୋଟ | | 20 | 4780 |

## ସାରଣୀ-5
### ଭାରତର ନିର୍ମାଣାଧୀନ ଆଣବିକ ବିଦ୍ୟୁତ୍ କେନ୍ଦ୍ର

| କ୍ରମିକ ସଂଖ୍ୟା | ବିଦ୍ୟୁତ୍ କେନ୍ଦ୍ରନାମ | ରାଜ୍ୟ | ରିଆକ୍ଟର ସଂଖ୍ୟା | ମୋଟକ୍ଷମତା (ମେଗାୱାଟ୍) | କାର୍ଯ୍ୟକ୍ଷମ ହେବାର ବର୍ଷ |
|---|---|---|---|---|---|
| 1 | କୁଡ଼ାଙ୍କୁଲମ୍ | ତାମିଲନାଡୁ | 2 | 2000 | 2014 |
| 2 | କୋଟା | ରାଜସ୍ଥାନ | 2 | 1400 | 2016 |
| 3 | କାକ୍ରାପର | ଗୁଜୁରାଟ | 2 | 1400 | 2015 |
| | ମୋଟ | | 6 | 4800 | |

# ପରମାଣୁ ବୋମା

ପୂର୍ବରୁ କୁହାଯାଇଛି ଯେ ପରମାଣୁ ରିଆକ୍ଟରରୁ ଅନିୟନ୍ତ୍ରିତ ଶକ୍ତି ଉତ୍ପାଦନ ହେଉଛି ପରମାଣୁ ବୋମା । ଏହାର ଧ୍ୱଂସକାରୀ ଶକ୍ତି ଅକଳନୀୟ । ପରମାଣୁ ବୋମା ନିର୍ମାଣର ବିଶଦ ତଥ୍ୟ ଏଠାରେ ଦେବା ସମୀଚିନ ମନେ କରାଯାଉ ନାହିଁ । କିନ୍ତୁ ପୃଥିବୀରେ ଏପର୍ଯ୍ୟନ୍ତ ନିକ୍ଷେପିତ ଦୁଇଟି ପରମାଣୁ ବୋମା ସମ୍ବନ୍ଧରେ କିଛି ସୂଚନା ଏଠାରେ ଦିଆଯାଉଛି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ (1939-1945) ସମୟରେ ପ୍ରଥମ ପରମାଣୁ ବୋମାର ନିର୍ମାଣ ଏବଂ ପ୍ରୟୋଗ ହୋଇଥିଲା । ଏହାପରେ ଅନେକ ଦେଶ କେତେଗୁଡିଏ ପରମାଣୁ ବୋମା ନିର୍ମାଣ କରି ସାଇତି ରଖିଥିଲେ ସୁଦ୍ଧା ଭଗବାନଙ୍କ ଦୟାରୁ ସେଗୁଡିକର ପ୍ରୟୋଗ ହୋଇନାହିଁ । ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ ଶତ୍ରୁ ପକ୍ଷକୁ ପରାଜିତ କରିବା ପାଇଁ ମିତ୍ର ପକ୍ଷର ନେତୃତ୍ୱ ନେଇଥିବା ଯୁକ୍ତରାଷ୍ଟ୍ର ଆମେରିକା ଗୁପ୍ତରେ ପରମାଣୁ ବୋମା ନିର୍ମାଣ କଲା ।

ପ୍ରଥମ ପରମାଣୁ ବୋମା 1945 ମସିହା ଜୁଲାଇ ମାସ 16 ତାରିଖରେ ଯୁକ୍ତରାଷ୍ଟ୍ର ଆମେରିକାର ନିଉ ମେକ୍ସିକୋର ଆଲ୍‌ମାଗାର୍ଡୋଠାରେ ସଫଳ ଭାବେ ପରୀକ୍ଷା କରାଯାଇଥିଲା । ଏହାପରେ ନିର୍ମିତ ଅନ୍ୟ ଦୁଇଟି ପରମାଣୁ ବୋମାକୁ ଜାପାନ ଉପରେ ନିକ୍ଷେପ କରିବା ପାଇଁ ଯୁକ୍ତରାଷ୍ଟ୍ର ଆମେରିକା ସ୍ଥିର କଲା । ଏହି ଦୁଇଟି ବୋମାର ନାମ ହେଉଛି କ୍ଷୁଦ୍ର ବାଳକ (Little boy) ଓ ମୋଟା ମଣିଷ (Fan man) ।

**ଲିଟିଲ୍ ବଏ୍ ବୋମା**

1945 ମସିହା ଅଗଷ୍ଟ ମାସ 6 ତାରିଖ ଦିନ ଜାପାନର ହିରୋସୀମା ସହରରେ ଏହାକୁ ପକା ଯାଇଥିଲା । ଏହି ବୋମା ୟୁରାନିୟମ୍-235 ପରମାଣୁରୁ ନିର୍ମିତ ହୋଇଥିଲା । ଏହାର ଦୈର୍ଘ୍ୟ ଥିଲା 3 ମିଟର, ପ୍ରସ୍ଥ 1 ମିଟର ଏବଂ ଓଜନ ଥିଲା

4 ଟନ୍ । ଏହାର ବିସ୍ଫୋରଣ କ୍ଷମତା ଥିଲା 20000 ଟନ୍ ଟି.ଏନ୍.ଟି. । ଏଥିରେ 15 କି.ଗ୍ରା. ୟୁରାନିୟମ୍ ବ୍ୟବହୃତ ହୋଇଥିଲା । ଆକାରରେ ଛୋଟ ହେତୁ ଏହାର ନାମ ଲିଟିଲ୍ ବଏ୍ ରଖାଯାଇଥିଲା ।



[ଚିତ୍ର-47: ଲିଟିଲ୍ ବଏ୍ ପରମାଣୁ ବୋମା]

ବୋମାଟି ହିରୋସୀମା ଉପରେ ଗୋଟିଏ ଉଡ଼ାଜାହାଜରୁ ପକାଯାଇଥିଲା । ଏହା ସହରର 4 ବର୍ଗ ମାଇଲ ଅଞ୍ଚଳକୁ ମୁହୂର୍ତ୍ତକ ମଧ୍ୟରେ ଧ୍ୱଂସ କରିଦେଇଥିଲା । ଏଥିରେ 66000 ଲୋକ ମୃତ୍ୟୁବରଣ କରିଥିଲେ ଏବଂ ପ୍ରାୟ 70000 ଲୋକ ଗୁରୁତର ଭାବେ ଆଘାତ ହୋଇଥିଲେ । ସହରର ପ୍ରାୟ ସମସ୍ତ କୋଠାବାଡ଼ି ଭୁଷୁଡ଼ି ଧ୍ୱଂସସ୍ତୂପରେ ପରିଣତ ହୋଇଥିଲା ।

**ଫ୍ୟାଟ୍ ମ୍ୟାନ୍ ବୋମା**

ଫ୍ୟାଟ୍ ମ୍ୟାନ୍ ବୋମା ପ୍ଲୁଟୋନିୟମ୍-239 ପରମାଣୁରୁ ନିର୍ମିତ ହୋଇଥିଲା । ଏହାର ଲମ୍ବ 3.25 ମିଟର, ପ୍ରସ୍ଥ 1.5 ମିଟର ଏବଂ ଓଜନ 4.5 ଟନ୍ ଥିଲା । ଏହାକୁ 1945 ମସିହା ଅଗଷ୍ଟ ମାସ 9 ତାରିଖ ଦିନ ଜାପାନର ଅନ୍ୟତମ ସହର



[ଚିତ୍ର-48: ଫ୍ୟାଟ୍ ମ୍ୟାନ୍ ପରମାଣୁ ବୋମା]

ନାଗାସାକି ଉପରେ ନିକ୍ଷେପ କରାଗଲା । ଏହାର ଶକ୍ତି 22000 ଟନ୍ ଟି.ଏନ୍.ଟି ଥିଲା । ଏଥିରେ 74000 ଲୋକ ପ୍ରାଣ ହରାଇଲେ । ଜାପାନ ଏହାର ଦୁଇ ଦିନ ପରେ ଆତ୍ମସମର୍ପଣ କଲା ଏବଂ ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବସାନ ଘଟିଲା ।



[ଚିତ୍ର-4:ନାଗାସାକିରେ ବୋମା ବିସ୍ଫୋରଣ ପରର ଦୃଶ୍ୟ]

**ଉଦଜାନ ବୋମା**

ଜାପାନରେ ପଡ଼ିଥିବା ଦୁଇଟିଯାକ ପରମାଣୁ ବୋମା 'ଆଣବିକ ବିଭାଜନ' ପ୍ରକ୍ରିୟାରେ କାମ କରିଥିଲା । 'ପରମାଣୁ ସଂଯୋଜନ' ପ୍ରକ୍ରିୟାରେ ଏହାଠାରୁ ଶକ୍ତିଶାଳୀ ବୋମା ବର୍ତ୍ତମାନ ନିର୍ମିତ ହେଲାଣି । ସଂଯୋଜନ ପ୍ରକ୍ରିୟାରେ ଦୁଇଟି ଛୋଟ ପରମାଣୁକୁ ଏକାଠି କରାଯାଏ । ଏଥିପାଇଁ ଉଦଜାନର ସମସ୍ଥାନିକ ଉପଯୁକ୍ତ ହୋଇଥାଏ । ଏଣୁ ଏହି ବୋମାର ନାମ 'ଉଦଜାନ ବୋମା' ରଖାଯାଇଛି । ଉଦଜାନ ବୋମା କାମ କରିବା ପାଇଁ 10 ରୁ 20 ନିୟୁତ ସେଲସିୟମ୍ ଡ଼ିଗ୍ରୀ ତାପମାତ୍ରା ଦରକାର ହୋଇଥାଏ । ଏହି ତାପମାତ୍ରା ୟୁରାନିୟମ୍-235 ରୁ ନିର୍ମିତ ପରମାଣୁ ବୋମାରୁ ମିଳିଥାଏ । ପରମାଣୁ ବୋମାକୁ ଉଦଜାନ ବୋମା ଭିତରେ ରଖାଯାଇଥାଏ । ପ୍ରଥମେ ଏଥିରୁ ଶକ୍ତି ଉତ୍ପାଦିତ ହୋଇ ତାପମାତ୍ରାକୁ ବଢାଇଥାଏ ଏବଂ ତା'ପରେ ଉଦଜାନ ବୋମା ବିସ୍ଫୋରିତ ହୋଇଥାଏ ।

**ନିଉଟ୍ରନ୍ ବୋମା**

ନିକଟରେ ଉଦଜାନ ବୋମା ମଧ୍ୟରେ ପରମାଣୁ ବୋମାକୁ (ୟୁରାନିୟମ୍-235 ରୁ ନିର୍ମିତ) ନରଖି ସଂଯୋଜନ ପ୍ରକ୍ରିୟା ପାଇଁ ଲେଜର୍ ରଶ୍ମି ବ୍ୟବହାର କରିବାର ପ୍ରଯୁକ୍ତିବିଦ୍ୟା ବିକଶିତ ହୋଇଛି । ଏଥିରୁ କେବଳ ନିଉଟ୍ରନ୍ ନିର୍ଗତ ହୋଇଥାଏ, ଯାହା ସଜୀବ ଜୀବକୋଷ ପାଇଁ ଅତୀବ କ୍ଷତିକାରକ । ଏହା ମନୁଷ୍ୟ ଓ ଜୀବଜନ୍ତୁକୁ ବିନାଶ କରୁଥିବାବେଳେ କୋଠାବାଡ଼ି, କଳକାରଖାନା ତଥା ଅନ୍ୟ ନିର୍ଜୀବ ବସ୍ତୁର କୌଣସି କ୍ଷତି ପହଞ୍ଚାଇ ନ ଥାଏ । ଏଭଳି ବୋମାରୁ କେବଳ ନିଉଟ୍ରନ୍ ନିର୍ଗତ ହେଉଥିବାରୁ ଏହାକୁ 'ନିଉଟ୍ରନ୍ ବୋମା' କୁହାଯାଉଛି । ଏହା ବର୍ତ୍ତମାନ ପରୀକ୍ଷା ସ୍ତରରେ ଅଛି ।

# କାର୍ବନ୍‌ରୁ କାଳ ନିର୍ଦ୍ଧାରଣ

## କାର୍ବନ୍-14 କାଳ ନିରୂପଣ ପଦ୍ଧତି

କାର୍ବନ୍-14 କାଳ ନିରୂପଣ ପଦ୍ଧତି (carbon dating) ହେଉଛି ଏକ ବୈଜ୍ଞାନିକ ପଦ୍ଧତି ଯାହା ସାହାଯ୍ୟରେ ଜୈବିକ ଉତ୍ସ ଥିବା 50,000 ବର୍ଷ ପର୍ଯ୍ୟନ୍ତ ପୁରାତନ ବସ୍ତୁର କାଳ ନିର୍ଦ୍ଧାରଣ କରିହୁଏ । ଏହା ଅସ୍ଥି, କପଡ଼ା, କାଠ ଓ ଉଦ୍ଭିଦ ତନ୍ତୁ ଆଦିର ବୟସ ନିର୍ଣ୍ଣୟରେ ବ୍ୟବହାର ହୋଇଥାଏ । ଯୁକ୍ତରାଷ୍ଟ୍ର ଆମେରିକାର ଚିକାଗୋ ବିଶ୍ୱବିଦ୍ୟାଳୟର ରସାୟନ ବିଜ୍ଞାନୀ ଉଇଲାର୍ଡ୍ ଏଫ୍. ଲିବି (Willard F. Libby) 1946 ମସିହାରେ ଏହି ପଦ୍ଧତିର ବିକାଶ କରିଥିଲେ । ଏଥିପାଇଁ ତାଙ୍କୁ 1960 ମସିହାରେ ରସାୟନ ବିଜ୍ଞାନ ପାଇଁ ନୋବେଲ ପୁରସ୍କାର ମିଳିଥିଲା ।

## କାର୍ବନ୍-14 ର ସୃଷ୍ଟି

କାର୍ବନ୍-14 ହେଉଛି କାର୍ବନର ଗୋଟିଏ ସମସ୍ଥାନିକ । ଏଥିରେ ଛଅଟି ପ୍ରୋଟୋନ୍ ଓ ଆଠଟି ନିଉଟ୍ରନ୍ ଅଛି । ମାତ୍ର ପ୍ରକୃତିରେ କାର୍ବନ୍-14 ମିଳି ନଥାଏ । ପୃଥିବୀରେ କେବଳ କାର୍ବନ୍-12 ଓ ଅଳ୍ପ କିଛି ପରିମାଣରେ କାର୍ବନ୍-13 ଗଚ୍ଛିତ ଅଛି । ମାତ୍ର କାର୍ବନ୍-14 ଏଠାରେ ସୃଷ୍ଟି ହେଉଛି । ମହାକାଶରୁ ଅନବରତ ଏକ ପ୍ରକାର ବିଶେଷ ରଶ୍ମି ପୃଥିବୀର ବାୟୁମଣ୍ଡଳକୁ ପ୍ରବେଶ କରିଥାଏ । ଏହାକୁ ମହାଜାଗତିକ ରଶ୍ମି (cosmic ray) କୁହାଯାଏ । ପ୍ରତ୍ୟେକ ବ୍ୟକ୍ତି ପ୍ରତି ଘଣ୍ଟାରେ ପ୍ରାୟ ପାଞ୍ଚ ଲକ୍ଷ ମହାଜାଗତିକ ରଶ୍ମି ସଂସ୍ପର୍ଶରେ ଆସିଥାଏ । ମାତ୍ର ଆମେ ଏହାକୁ ଅନୁଭବ କରି ପାରୁନାହୁଁ । ମହାଜାଗତିକ ରଶ୍ମି ପୃଥିବୀର ବାୟୁମଣ୍ଡଳର ପରମାଣୁ ସହ ସଂଘର୍ଷ କରିଥାଏ । ମହାକାଶରୁ ଆସୁଥିବା ମହାଜାଗତିକ ରଶ୍ମିକୁ ପ୍ରାଥମିକ (primary) ରଶ୍ମି କୁହାଯାଉଥିବାବେଳେ ଏହି ରଶ୍ମି କୌଣସି ପରମାଣୁ ସହ ସଂଘର୍ଷ କରି ଦ୍ୱିତୀୟକ (secondary) ମହାଜାଗତିକ ରଶ୍ମି ସୃଷ୍ଟି କରିଥାଏ । ଏହି ଦ୍ୱିତୀୟକ ମହାଜାଗତିକ ରଶ୍ମିରେ ଗୋଟିଏ ଶକ୍ତିଶାଳୀ ନିଉଟ୍ରନ୍ ଥାଏ । ଏହି ନିଉଟ୍ରନ୍

ବାୟୁମଣ୍ଡଳରେ ଥିବା ଯବକ୍ଷାରଜାନ ପରମାଣୁ ସହ ସଂଘର୍ଷ ହେଲେ କାର୍ବନ୍-14 ପରମାଣୁ ସୃଷ୍ଟି ହୋଇଥାଏ । ଯବକ୍ଷାରଜାନ ପରମାଣୁରେ ସାତୋଟି ପ୍ରୋଟୋନ୍ ଓ ସାତୋଟି ନିଉଟ୍ରନ୍ ଅଛି । ଗୋଟିଏ ନିଉଟ୍ରନ୍ ସହ ଏହାର ସଂଘର୍ଷ ହେଲେ ଗୋଟିଏ କାର୍ବନ୍-14 ପରମାଣୁ (ଛଅ ପ୍ରୋଟୋନ୍ ଓ ଆଠ ନିଉଟ୍ରନ୍) ଏବଂ ଗୋଟିଏ ଉଦଜାନ ପରମାଣୁ (କେବଳ ଗୋଟିଏ ପ୍ରୋଟୋନ୍) ସୃଷ୍ଟି ହୋଇଥାଏ । ଏହି ରାସାୟନିକ ପ୍ରତିକ୍ରିୟା ହେଉଛି

$${}_{7}N^{14} + n^{1} \rightarrow {}_{6}C^{14} + {}_{1}H^{1}$$

ଏହିପରି ଭାବେ ପୃଥିବୀର ବାୟୁମଣ୍ଡଳରେ କାର୍ବନ୍-14 ସୃଷ୍ଟି ହୋଇଥାଏ । ଏହା ହେଉଛି ଗୋଟିଏ ତେଜସ୍କ୍ରିୟ (radioactive) ପଦାର୍ଥ ଏବଂ ଏହାର ଅର୍ଦ୍ଧ-ଜୀବନ କାଳ (half-life period) ହେଉଛି 5700 ବର୍ଷ ।

## ଜୀବନ୍ତ ବସ୍ତୁ ଶରୀରରେ କାର୍ବନ୍-14

ପ୍ରତ୍ୟେକ ଜୀବନ୍ତ ବସ୍ତୁରେ କାର୍ବନ୍‌ର ପରିମାଣ ସର୍ବାଧିକ । ଆମର ଖାଦ୍ୟ ହିଁ ମୁଖ୍ୟତଃ କାର୍ବନ୍‌କୁ ନେଇ ଗଠିତ । ପ୍ରକୃତିରେ କେବଳ ଉଦ୍ଭିଦ ଖାଦ୍ୟ ପ୍ରସ୍ତୁତ କରିଥାଏ ଏବଂ ସମସ୍ତ ପ୍ରାଣୀ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷରେ ଉଦ୍ଭିଦଠାରୁ ଖାଦ୍ୟ ଗ୍ରହଣ କରିଥାନ୍ତି । ଉଦ୍ଭିଦ ଆଲୋକ ସଂଶ୍ଲେଷଣ (photosynthesis) ପ୍ରକ୍ରିୟାରେ ସୂର୍ଯ୍ୟକିରଣ ସାହାଯ୍ୟରେ ବାୟୁମଣ୍ଡଳରୁ ଅଙ୍ଗାରକାମ୍ଳ ଓ ଭୂଗର୍ଭରୁ ଜଳ ନେଇ ଖାଦ୍ୟ ପ୍ରସ୍ତୁତ କରିଥାଏ । ଅଙ୍ଗାରକାମ୍ଳ ($CO_2$) କାର୍ବନ୍ ଓ ଅମ୍ଳଜାନକୁ ନେଇ ଗଠିତ । ଏଥିରେ ସାଧାରଣ କାର୍ବନ୍-12 ସହ ମହାଜାଗତିକ ରଶ୍ମିଦ୍ୱାରା ବାୟୁମଣ୍ଡଳରେ ସୃଷ୍ଟି ହେଉଥିବା କାର୍ବନ୍-14 ମଧ୍ୟ ମିଶିଥାଏ । ଫଳରେ ଉଦ୍ଭିଦ ଓ ପ୍ରାଣୀ ଦେହରେ ରହିଥିବା କାର୍ବନ୍‌ରେ ଉଭୟ କାର୍ବନ୍-12 ଓ କାର୍ବନ୍-14 ରହିଛି । ଜଣାଯାଇଛି ଯେ ବାୟୁମଣ୍ଡଳ ଓ ପ୍ରତ୍ୟେକ ଜୀବନ୍ତ ବସ୍ତୁରେ ଯେ କୌଣସି ସମୟରେ କାର୍ବନ୍-12 ଓ କାର୍ବନ୍-14ର ଅନୁପାତ ପ୍ରାୟ ନିର୍ଦ୍ଦିଷ୍ଟ ଥାଏ । ଏକ ଟ୍ରିଲିୟନ୍ (ଏକ ଲକ୍ଷ କୋଟି) କାର୍ବନ୍ ପରମାଣୁରେ ମାତ୍ର ଗୋଟିଏ କାର୍ବନ୍-14 ପରମାଣୁ ଥିବାର ଜଣାପଡ଼ିଛି । ଆମେ ଆଗରୁ ଜାଣିଛେ ଯେ କାର୍ବନ୍-14 ହେଉଛି ତେଜସ୍କ୍ରିୟ ଏବଂ ଏହା କ୍ରମଶଃ ଅବକ୍ଷୟ ହେଉଥାଏ । ମାତ୍ର ଜୀବନ୍ତ ବସ୍ତୁ ଦେହରେ ଏହା ଏକ ନିର୍ଦ୍ଦିଷ୍ଟ ହାରରେ ନୂଆ କାର୍ବନ୍-14 ପରମାଣୁ ଦ୍ୱାରା ପୂରଣ ହେଉଥାଏ ।

ଏଣୁ ଜୀବନ୍ତ ଶରୀରରେ କାର୍ବନ୍-12 ଓ କାର୍ବନ୍-14ର ଅନୁପାତ ସର୍ବଦା ସମାନ ଥାଏ । ସମସ୍ତ ଜୀବନ୍ତ ପ୍ରାଣୀ ଓ ଉଦ୍ଭିଦ ଶରୀରରେ ଏହି ଅନୁପାତ ସମାନ ।




[ଚିତ୍ର-50:କାର୍ବନ୍ ଡେଟିଙ୍ଗ୍]

## ଜୀବାଶ୍ମର କାଳ ନିରୂପଣ

କୌଣସି ପ୍ରାଣୀ କିମ୍ବା ଉଦ୍ଭିଦ ମୃତ୍ୟୁ ଲଭିଲେ, ଏହା ଆଉ ନୂଆ କାର୍ବନ ଗ୍ରହଣ କରିପାରେ ନାହିଁ । ମୃତ୍ୟୁବେଳେ ଏହା ଶରୀରରେ କାର୍ବନ୍-12 ଓ କାର୍ବନ୍-14ର ଅନୁପାତ ଗୋଟିଏ ଜୀବନ୍ତ ବସ୍ତୁ ଦେହରେ ଥିବା ଏହି ଅନୁପାତ ସହ ସମାନ ଥିଲା । ମାତ୍ର ମୃତ୍ୟୁ ପରେ ଏହା ଶରୀରରେ କାର୍ବନ୍-14ର ଅବକ୍ଷୟ ଘଟେ ଓ କାର୍ବନ୍-12 ପରିମାଣ ସ୍ଥିର ରହେ । ମୃତ୍ୟୁ ପରେ ଏହା ବାହାରୁ କାର୍ବନ୍ ଗ୍ରହଣ କରିପାରୁ ନଥିବାରୁ ଅବକ୍ଷୟ ହେଉଥିବା କାର୍ବନ୍-14 ଆଉ ପୂରଣ ହୋଇପାରେ ନାହିଁ ଏବଂ ଏହାର ପରିମାଣ କ୍ରମଶଃ ହ୍ରାସ ପାଇବାକୁ ଲାଗେ । କାର୍ବନ୍-12 ପରିମାଣ ନିର୍ଦ୍ଦିଷ୍ଟ ରହୁଥିବାରୁ ମୃତ ଶରୀର ବା ଜୀବାଶ୍ମରେ କାର୍ବନ୍-12ର ଓ କାର୍ବନ୍-14ର ଅନୁପାତ ବଢ଼ିବାକୁ ଲାଗେ । କାର୍ବନ୍-14ର ଅର୍ଦ୍ଧ-ଜୀବନ କାଳ 5700 ବର୍ଷ ଆମକୁ ଜଣା । ଏଣୁ ଯେ କୌଣସି ଜୀବାଶ୍ମ ନମୁନାରେ କାର୍ବନ୍-12 ଓ କାର୍ବନ୍-14ର ଅନୁପାତକୁ ବୈଜ୍ଞାନିକ ଉପାୟରେ ମାପି ଏବଂ ଏହାକୁ ଜୀବନ୍ତ ବସ୍ତୁ ଦେହରେ ଥିବା ଅନୁପାତ ସହ ତୁଳନା କରି ଜୀବାଶ୍ମର ମୃତ୍ୟୁ ସମୟକୁ ସଠିକଭାବେ ନିର୍ଣ୍ଣୟ କରିହୁଏ ।

# ପରମାଣୁ ବିଜ୍ଞାନର ଅନ୍ୟାନ୍ୟ ପ୍ରୟୋଗ

ଆଣବିକ ବିଭାଜନ ଉପାୟରେ ଉତ୍ପାଦିତ ବିଦ୍ୟୁତ୍ ଶକ୍ତି ବୁଡ଼ାଜାହାଜ, ଜାହାଜ ଓ ମହାକାଶଯାନକୁ ଯୋଗାଇ ଦିଆଯାଉଛି । ଆଣବିକ ଶକ୍ତି ସମ୍ପନ୍ନ ବୁଡ଼ାଜାହାଜ ପାଣି ତଳେ ବହୁତ ବର୍ଷ ପର୍ଯ୍ୟନ୍ତ ଅବିରତ ରହିପାରୁଛି । ପୃଥିବୀ କିମ୍ବା ମଙ୍ଗଳ କକ୍ଷକୁ ଯାଉଥିବା ମହାକାଶ ଯାନରେ ସୌର ଫଳକ ରହିଥାଏ, ଯାହା ସାହାଯ୍ୟରେ ସୂର୍ଯ୍ୟ କିରଣରୁ ସୌର ଶକ୍ତି ଉତ୍ପାଦିତ ହୁଏ । ମାତ୍ର ଦୂର ଗ୍ରହକୁ ଯାଉଥିବା ମହାକାଶଯାନ ଯଥେଷ୍ଟ ପରିମାଣର ସୂର୍ଯ୍ୟକିରଣ ପାଇ ପାରିନଥାଏ । ଏଣୁ ସେଥିରେ ଆଣବିକ ବିଭାଜନ ପ୍ରକ୍ରିୟାରେ ଶକ୍ତି ଉତ୍ପନ୍ନ କରାଯାଏ । ଶନି ଗ୍ରହ ଅଭିମୁଖେ ଯାଇଥିବା 'କାସିନି' ଯାନରେ ଏହିପରି ବ୍ୟବସ୍ଥା କରାଯାଇଛି । ପୁନଶ୍ଚ ମଙ୍ଗଳ



[ଚିତ୍ର-51: ଆଣବିକ ଶକ୍ତି ଚାଳିତ ମଙ୍ଗଳପୃଷ୍ଠରେ କାର୍ଯ୍ୟରତ ରୋଭର୍ ଯାନ]

ପୃଷ୍ଠରେ କାର୍ଯ୍ୟ କରୁଥିବା 'ରୋଭର୍' ଯାନ ଏହି ଶକ୍ତିଦ୍ୱାରା ଚାଳିତ ହେଉଛି । ପରମାଣୁ ଶକ୍ତିଚାଳିତ ରକେଟ୍ ନିର୍ମାଣ ପାଇଁ ଚେଷ୍ଟା ଚାଲିଛି ।

ତେଜସ୍କ୍ରିୟ ସମସ୍ଥାନିକଗୁଡ଼ିକୁ ଭେଷଜ ବିଜ୍ଞାନରେ ବ୍ୟବହାର କରାଯାଇଥାଏ । କ୍ୟାନସର୍ ରୋଗର ପ୍ରଥମ ଅବସ୍ଥାରେ ତେଜସ୍କ୍ରିୟ ରେଡ଼ିୟମ୍ କିମ୍ବା କୋବାଲ୍ଟ ବ୍ୟବହାର କରି ଚିକିତ୍ସା କରାଯାଏ । କ୍ୟାନସର୍ ପ୍ରଭାବିତ କୋଷକୁ ନଷ୍ଟ କରିବା ପାଇଁ ବିକିରଣ ବ୍ୟବହାର କରାଯାଏ ଯାହା ଫଳରେ କ୍ୟାନ୍‌ସର ଆକ୍ରାନ୍ତ ତନ୍ତୁଗୁଡ଼ିକର ବୃଦ୍ଧି ବନ୍ଦ ହୋଇଯାଏ ।

ତେଜସ୍କ୍ରିୟ ଆୟୋଡ଼ିନ୍‌କୁ ଔଷଧ ସହିତ ବ୍ୟବହାର କରି ଥାଇରଏଡ୍ ଗ୍ରନ୍ଥି (thyroid gland) ରୋଗର ଚିକିତ୍ସା କରାଯାଇଥାଏ । ଯଦି ଥାଇରଏଡ୍ ଗ୍ରନ୍ଥିର କୌଣସି ଅସ୍ୱାଭାବିକ ବୃଦ୍ଧି ଯଥା କ୍ୟାନ୍‌ସର ରୋଗ ଜନିତ ବୃଦ୍ଧି ହୋଇଥାଏ, ତାକୁ ତେଜସ୍କ୍ରିୟ ଆୟୋଡ଼ିନ୍ ନଷ୍ଟ କରିଥାଏ ।

ବୈଜ୍ଞାନିକମାନେ ଶରୀରବିଜ୍ଞାନ (pathology) ଗବେଷଣାରେ ଶରୀର ମଧ୍ୟରେ ଜୈବରାସାୟନିକ ପ୍ରକ୍ରିୟା ଜାଣିବା ପାଇଁ ତେଜସ୍କ୍ରିୟ ପରମାଣୁ ବ୍ୟବହାର କରିଥାଆନ୍ତି । ଗୋଟିଏ ଜୀବନ୍ତ କୋଷ ମଧ୍ୟରେ ଘଟୁଥିବା ପ୍ରତିକ୍ରିୟା ହେଉଛି ଜୈବରାସାୟନିକ ପ୍ରତିକ୍ରିୟା । ତେଜସ୍କ୍ରିୟ ପରମାଣୁ ଥିବା ରାସାୟନିକ ପଦାର୍ଥକୁ ଇଞ୍ଜେକ୍‌ସନ୍‌ଦ୍ୱାରା ଶରୀର ମଧ୍ୟରେ ପ୍ରବେଶ କରାଇ କୋଷ ମଧ୍ୟରେ ରାସାୟନିକ ପଦାର୍ଥର ପଥକୁ ଚିହ୍ନିତ କରିହୁଏ । ଏଣୁ ଏଥିପାଇଁ ବ୍ୟବହୃତ ତେଜସ୍କ୍ରିୟ ପରମାଣୁକୁ ଟ୍ରେସର୍ (tracer) କୁହାଯାଏ । ଏହି ପରୀକ୍ଷା ଦ୍ୱାରା ଉଦ୍ଭିଦ ଓ ପ୍ରାଣୀମାନଙ୍କ ଶରୀର ସମ୍ବନ୍ଧରେ ଅନେକ ତଥ୍ୟ ମିଳିଛି । ରାସାୟନିକ ପ୍ରକ୍ରିୟାର ଅଧ୍ୟୟନ ପାଇଁ ଟ୍ରେସର୍‌କୁ ପ୍ରଥମେ ବ୍ୟବହାର କରିଥିବାରୁ ହଙ୍ଗେରିର ବୈଜ୍ଞାନିକ ଜର୍ଜ ଡ଼େ ହେଭେସିଙ୍କୁ 1943 ମସିହାରେ ରସାୟନ ବିଜ୍ଞାନରେ ନୋବେଲ ପୁରସ୍କାର ମିଳିଥିଲା ।

କେତେକ ହୃଦରୋଗୀ କୃତ୍ରିମ ହୃତପିଣ୍ଡ ପ୍ରେରକ ବା ପେସ୍ ମେକର୍ (Pace maker) ଲଗାଇଥାନ୍ତି । ଏହାକୁ ଛାତିର ଚର୍ମ ତଳେ ଶଲ୍ୟ ଚିକିତ୍ସା ଦ୍ୱାରା ସ୍ଥାପନ କରାଯାଇଥାଏ । ଯେଉଁ ରୋଗୀର ହୃତପିଣ୍ଡର ସ୍ପନ୍ଦନ ଅନିୟମିତ ଭାବେ ଚାଲେ, ଏହା ତାକୁ ନିୟମିତ କରିଥାଏ । ଆରମ୍ଭରେ ବ୍ୟାଟେରି ସାହାଯ୍ୟରେ ଏହା ଚାଲୁଥିଲା । ଏଣୁ ବ୍ୟାଟେରି ଶେଷ ହୋଇଗଲେ ନୂଆ ବ୍ୟାଟେରି ଲଗାଇବା ପାଇଁ

ପୁନଶ୍ଚ ଅସ୍ତ୍ରୋପଚାର କରିବାକୁ ପଡୁଥିଲା, ମାତ୍ର ବର୍ତ୍ତମାନ ବ୍ୟାଟେରି ଜାଗାରେ ଶକ୍ତି ଯୋଗାଇବା ପାଇଁ ପ୍ଲୁଟୋନିୟମ୍-238 ବ୍ୟବହୃତ ହେଉଛି । ଏହା ଦଶ ବର୍ଷରୁ ଅଧିକ ସମୟ ପର୍ଯ୍ୟନ୍ତ କାମ କରିଥାଏ । ଏହା ଦ୍ୱାରା ରୋଗୀର ଶଲ୍ୟ ଚିକିତ୍ସା କମ୍ ହୋଇପାରିଛି ।

ସିଜିୟମ୍-138 ଦ୍ୱାରା କ୍ୟାନ୍ସର ଆରୋଗ୍ୟ ଏବଂ ଲୌହ-59 ଓ ଯବକ୍ଷାରଜାନ-15 ଦ୍ୱାରା ରକ୍ତଜନିତ ରୋଗକୁ ସହଜରେ ଚିହ୍ନଟ କରି ହେଉଛି । ଫସଫରସ୍-32 କିମ୍ବା ପୋଟାସିୟମ୍-40 ଦ୍ୱାରା ରକ୍ତହୀନତା ଭଲ ହୋଇପାରୁଛି । ତେଜସ୍କ୍ରିୟ ଫସଫରସ୍ ବ୍ୟବହାର ଦ୍ୱାରା ଟ୍ୟୁମର୍, ରକ୍ତ କର୍କଟ ରୋଗ ଆଦିର ଚିକିତ୍ସା କରାଯାଉଛି ।

ତେଜସ୍କ୍ରିୟ ବିକିରଣ ଦ୍ୱାରା ବିଷାକ୍ତ ଜୀବାଣୁ ଓ ବାକ୍ଟେରିଆଗୁଡିକୁ ମାରି ଦିଆଯାଇ ପାରିବ । ଗାମା ରଶ୍ମି ଏହି କ୍ଷେତ୍ରରେ ଅତ୍ୟନ୍ତ ଦରକାରୀ । ଖାଦ୍ୟଦ୍ରବ୍ୟକୁ ବିଶୋଧନ କରିବା ପାଇଁ ଏହା ବ୍ୟବହୃତ ହେଉଛି । ଖାଦ୍ୟ ଦ୍ରବ୍ୟ ଗାମା ରଶ୍ମି ସଂସ୍ପର୍ଶରେ ଆସିଲେ ତା ମଧ୍ୟରେ ଥିବା ଜୀବାଣୁ ମରିଯାଆନ୍ତି ଏବଂ ଖାଦ୍ୟଦ୍ରବ୍ୟ ସୁରକ୍ଷିତ ରହେ ।

ଆମେରିସିୟମ୍ ହେଉଛି ମନୁଷ୍ୟକୃତ ଗୋଟିଏ ମୌଳିକ ପଦାର୍ଥ । ଏହାର ଏକ ସମସ୍ଥାନିକ ଆମେରିସିୟମ୍-241 ଘର ଭିତରର ଧୂଆଁକୁ ଠାବ କରିବା ପାଇଁ ବ୍ୟବହାର କରାଯାଏ ।

# ଆଧୁନିକ କଣିକା ପଦାର୍ଥ ବିଜ୍ଞାନ

ପରମାଣୁର ଅଧ୍ୟୟନ ହେଉଛି ବଡ଼ କୌତୁହଳଜନକ । ଆଜକୁ ପ୍ରାୟ 2500 ବର୍ଷ ପୂର୍ବରୁ ଏହାର ଅଧ୍ୟୟନ ଆରମ୍ଭ ହୋଇଥିଲେ ସୁଦ୍ଧା ଏହା ବିଷୟରେ ଜାଣିବା ପାଇଁ ଆହୁରି ଅନେକ ବାକି ଅଛି । ଏହା ସମ୍ବନ୍ଧରେ ଆମେ ଯେତେ ଯେତେ ଅଧିକ ଜାଣୁଛେ, ଏହା ସେତେ ରହସ୍ୟମୟ ହୋଇଯାଉଛି । ବିଂଶ ଶତାବ୍ଦୀର ପ୍ରଥମ ଭାଗରେ କ୍ୱାଣ୍ଟମ୍ ପଦାର୍ଥ ବିଜ୍ଞାନର ବିକାଶ ପରେ ଇଲେକ୍‌ଟ୍ରନ୍, ନିଉଟ୍ରନ୍ ଓ ପ୍ରୋଟୋନ୍ ବ୍ୟତୀତ ଆହୁରି କେତେଗୁଡ଼ିଏ ଉପ-ପରମାଣବିକ କଣିକା ଆବିଷ୍କୃତ ହେଉାଣି । ଫଳରେ ପ୍ରାଚୀନ କାଳ ପରି ଏବେ ମଧ୍ୟ ଲୋକମାନେ ବୈଜ୍ଞାନିକମାନଙ୍କୁ ପଚାରୁଛନ୍ତି, "ବସ୍ତୁର ମୌଳିକ ଏକକ କ'ଣ ?" ପ୍ରଥମେ ଏହାର ଉତ୍ତର ପରମାଣୁ ଥିଲା । ପରେ ଆସିଲା ଇଲେକ୍‌ଟ୍ରନ୍, ପ୍ରୋଟୋନ୍ ଓ ନିଉଟ୍ରନ୍ ।

ଆଧୁନିକ ପଦାର୍ଥ ବିଜ୍ଞାନୀମାନେ କଣିକାତ୍ୱରକ (particle accelerator) ରେ ପରମାଣୁଗୁଡ଼ିକୁ ଅତି ଦ୍ରୁତ ବେଗରେ ଘୂରାଇ ଏବଂ ପରସ୍ପର ମଧ୍ୟରେ ସଂଘର୍ଷ କରାଇ ଜାଣିପାରିଲେ ଯେ ଆହୁରି କେତେଗୁଡ଼ିଏ କ୍ଷୁଦ୍ରାତିକ୍ଷୁଦ୍ର ଉପପରମାଣବିକ ପଦାର୍ଥକୁ ନେଇ ପରମାଣୁ ଗଠିତ । ସର୍ବଶେଷ ସିଦ୍ଧାନ୍ତ ଅନୁଯାୟୀ ଦୁଇ ପ୍ରକାରର ମୋଟ ବାରଟି ମୌଳିକ କଣିକାରୁ ପରମାଣୁ ଗଠିତ । ଏହା ହେଉଛି ଛଅଟି କ୍ୱାର୍କ (quark) ଓ ଛଅଟି ଲେପଟନ୍ (lepton) । ଛଅ ପ୍ରକାର କ୍ୱାର୍କ ହେଉଛି ଅପ୍ (up), ଡାଉନ୍ (down), ଚାର୍ମ (charm), ଷ୍ଟ୍ରେଞ୍ଜ (strange), ଟପ୍ (top) ଓ ବଟମ୍ (bottom) । ଛଅ ପ୍ରକାର ଲେପଟନ୍ ହେଉଛି ଆମର ପୁରୁଣା ପରିଚିତ ଇଲେକ୍‌ଟ୍ରନ୍, ଇଲେକ୍‌ଟ୍ରନ୍ ନିଉଟ୍ରିନୋ, ମ୍ୟୁଅନ୍ (muon), ମ୍ୟୁଅନ୍ ନିଉଟ୍ରିନୋ, ଟାଉ (tau) ଓ ଟାଉ ନିଉଟ୍ରିନୋ । ବିଗ୍‌ବ୍ୟାଙ୍ଗ୍ ପରେ ବିଶ୍ୱ ସୃଷ୍ଟି ହେବାବେଳେ ସମସ୍ତ ପ୍ରକାର କ୍ୱାର୍କ ଓ ଲେପଟନ୍ ଥିଲା, ମାତ୍ର ବର୍ତ୍ତମାନ ପ୍ରକୃତିରେ ସେସବୁ ନାହିଁ । କ୍ୱାର୍କ ମଧ୍ୟରୁ କେବଳ ଅପ୍ ଓ ଡାଉନ୍ କ୍ୱାର୍କର ବିଭିନ୍ନ ପ୍ରକାର ସଂଯୋଗରେ ପରମାଣୁର

ନାଭିକ ସୃଷ୍ଟି ହେଉଛି । ଲେପଟନ୍ ମଧ୍ୟରୁ ଇଲେକ୍‌ଟ୍ରନ୍ ବିନା ଆମେ ଚଳି ପାରିବା ନାହିଁ ଏବଂ ବିଭିନ୍ନ ପ୍ରତିକ୍ରିୟା ପାଇଁ ନିଉଟ୍ରିନୋ ଦରକାର ହୋଇଥାଏ ।

ନିଉଟ୍ରିନୋ ହେଉଛି ଏକ ସ୍ୱତନ୍ତ୍ର ଧରଣର ପ୍ରାରମ୍ଭିକ କଣିକା । ଏହାକୁ ଏକ ବସ୍ତୁତ୍ୱବିହୀନ (massless) ବିଦ୍ୟୁତ୍ ନିରପେକ୍ଷ କଣିକା ଭାବେ ଧରାଯାଉଛି । ବାସ୍ତବରେ ଏହାର ବସ୍ତୁତ୍ୱ ଅତି ନଗଣ୍ୟ ଏବଂ ବସ୍ତୁତ୍ୱକୁ ଏପର୍ଯ୍ୟନ୍ତ ସଠିକ୍ ଭାବରେ ମପା ଯାଇପାରି ନାହିଁ । ଏଣୁ ଏହାକୁ ବସ୍ତୁତ୍ୱବିହୀନ ଭାବେ ମନେ କରାଯାଉଛି । ଏହା ମୁଖ୍ୟତଃ ବିଟା କ୍ଷୟ ସମୟରେ ନିର୍ଗତ ହୋଇଥାଏ । ଏହା ସାଧାରଣ ପଦାର୍ଥ ସହ ପ୍ରାୟ କୌଣସି ପ୍ରତିକ୍ରିୟା କରେ ନାହିଁ । ଏହାର ବେଗ ଆଲୋକର ବେଗ ସହ ପ୍ରାୟ ସମାନ ।

ତିନୋଟି କ୍ୱାର୍କ ମିଳିତ ହୋଇ ପ୍ରୋଟୋନ୍ କିମ୍ବା ନିଉଟ୍ରନ୍ ଗଠିତ ହୋଇଥାଏ । ଦୁଇଟି ଅପ୍ କ୍ୱାର୍କ ଓ ଗୋଟିଏ ଡ଼ାଇନ୍ କ୍ୱାର୍କରୁ ପ୍ରୋଟୋନ୍ ଗଠିତ । ସେହିପରି ଗୋଟିଏ ଅପ୍ କ୍ୱାର୍କ ଓ ଦୁଇଟି ଡ଼ାଇନ୍ କ୍ୱାର୍କରୁ ନିଉଟ୍ରନ୍ ଗଠିତ । ବିଭିନ୍ନ ଶ୍ରେଣୀର କ୍ୱାର୍କ ମିଳିତ ହୋଇ ଗୋଟିଏ ନୂତନ ଶ୍ରେଣୀର ପଦାର୍ଥ ସୃଷ୍ଟି ହୋଇଥାଏ । ଏହାର ନାମ ହେଉଛି ହାଡ୍ରନ୍ (hadron) । ତିନି ପ୍ରକାର କ୍ୱାର୍କର ସଂଯୋଗରେ ଗୋଟିଏ ହାଡ୍ରନ୍ ସୃଷ୍ଟି ହେଉଥିବାରୁ ଛଅ ପ୍ରକାର କ୍ୱାର୍କର ବିଭିନ୍ନ ପ୍ରକାର ସଂଯୋଗରେ 216 ପ୍ରକାର ହାଡ୍ରନ୍ ସୃଷ୍ଟି ହୋଇପାରିବ । ପରୀକ୍ଷାଗାରରେ ଏଥିରୁ ଅନେକ ପ୍ରକାରକୁ ଆବିଷ୍କାର କରାଯାଇ ପାରିଛି । ଏଗୁଡିକୁ ଗ୍ରୀକ୍ ଅକ୍ଷର ଲାମ୍ବଡା, ସିଗ୍‌ମା ଆଦି ନାମ ଦିଆଯାଇଛି । ପ୍ରୋଟୋନ୍ ଓ ନିଉଟ୍ରନ୍ ହେଉଛି ଗୋଟିଏ ଗୋଟିଏ ହାଡ୍ରନ୍ । ବିଭିନ୍ନ ସଂଖ୍ୟକ ପ୍ରୋଟୋନ୍ ଓ ନିଉଟ୍ରନ୍‌ର ସମାନ ସଂଖ୍ୟକ ଇଲେକ୍‌ଟ୍ରନ୍ ସହ ସଂଯୋଗ ହୋଇ ବିଭିନ୍ନ ପ୍ରକାର ମୌଳିକ ପଦାର୍ଥର ପରମାଣୁ ସୃଷ୍ଟି ହୋଇଛି ।

ପରମାଣୁର ଗଠନକୁ ବୁଝିବା ପାଇଁ ବୈଜ୍ଞାନିକମାନେ 1970 ଦଶକରେ ଗୋଟିଏ ମଡେଲ୍ ତିଆରି କଲେ । ଏହାକୁ ଷ୍ଟାଣ୍ଡାର୍ଡ ମଡେଲ୍ (standard mode) କୁହାଯାଏ । ଛଅଟି କ୍ୱାର୍କ, ଛଅଟି ଲେପଟନ୍ ଓ ଛଅଟି ବଳବାହକକୁ ନେଇ ମଡେଲ୍‌ଟି ପ୍ରସ୍ତୁତ ହୋଇଛି । ଛଅଟି ବଳବାହକ ହେଉଛି ଫୋଟନ୍, ଜେଡ୍ ବୋଷନ୍, ଡବ୍ଲ୍ୟୁ ପ୍ଲସ୍ ବୋଷନ୍, ଡବ୍ଲ୍ୟୁ ମାଇନସ ବୋଷନ୍, ଗ୍ଲୁଅନ୍ ଓ ହିଗସ୍ ବୋଷନ୍ । ଯୁକ୍ତରାଷ୍ଟ୍ର ଆମେରିକାର ଇଲିନୋଇସ୍‌ଠାରେ ଥିବା ଫର୍ମି ଲାବୋରେଟୋରୀରେ ପଦାର୍ଥ

ବିଜ୍ଞାନୀ ଲିଓନ୍ ଲେଦେରମାନ୍ ଓ ତାଙ୍କ ସହଯୋଗୀମାନେ ଏହି ମଡେଲ୍ ପ୍ରସ୍ତୁତ କରି ପରୀକ୍ଷା କରିବା ସଙ୍ଗେ ସଙ୍ଗେ କେତେକ ଉପପରମାଣବିକ ବସ୍ତୁତ୍ୱ ଆବିଷ୍କାର କରିଥିଲେ । ସେଥିପାଇଁ ଲେଦରମାନ୍‌ଙ୍କୁ ୧୨୮୪ ମସିହାରେ ପଦାର୍ଥ ବିଜ୍ଞାନରେ ନୋବେଲ୍ ପୁରସ୍କାର ପ୍ରଦାନ କରାଯାଇଥିଲା ।

ବଳବାହକଗୁଡିକ ମଧ୍ୟରୁ ହିଗ୍‌ସ ବୋଷନ୍ ବହୁଦିନ ପର୍ଯ୍ୟନ୍ତ ଅନାବିଷ୍କୃତ ହୋଇ ରହିଥିଲା । ଦୁଇଜଣ ପଦାର୍ଥ ବିଜ୍ଞାନୀ ବ୍ରିଟେନ୍‌ର ପିଟର ହିଗ୍‌ସ (ଯାହାଙ୍କ ନାମରେ ଏହି କଣିକା ନାମିତ ହୋଇଛି) ଏବଂ ବେଲଜିୟମ୍‌ର ଫ୍ରାଙ୍କୋଇସ୍ ଇଂଲର୍ଟ ତାତ୍ତ୍ୱିକ ଭାବରେ 1964 ମସିହାରେ ଏହାର ପୂର୍ବାନୁମାନ କରିଥିଲେ । ସୁଇଜରଲାଣ୍ଡର ଜେନେଭା ନିକଟରେ ଥିବା ସର୍ନ ପରୀକ୍ଷାଗାରରେ ଏହାକୁ 2012 ମସିହାରେ ଆବିଷ୍କାର କରାଗଲା । ଏଥିପାଇଁ ବ୍ୟବହୃତ ହୋଇଥିବା ଲାର୍ଜ ହାଡ୍ରୋନ୍ କୋଲାଇଡ଼ର୍ (Large Hadron Collider) ହେଉଛି ବୃହତ୍ତମ କଣିକାତ୍ୱରକ । ହିଗ୍‌ସ ବୋଷନ୍ ଯୋଗୁଁ କଣିକାଗୁଡିକ ବସ୍ତୁତ୍ୱ ଲାଭ କରିଥାଆନ୍ତି ଏବଂ ଫଳରେ ବିଶ୍ୱରେ ଜୀବଜଗତଠାରୁ ଆରମ୍ଭ କରି ଗ୍ରହ, ନକ୍ଷତ୍ର ପର୍ଯ୍ୟନ୍ତ ସମସ୍ତ ବସ୍ତୁ ଗଠିତ ହୋଇଛି । ଏହାର ପୂର୍ବାନୁମାନ କରିଥିବାରୁ ପିଟର ହିଗ୍‌ସ ଏବଂ ଫ୍ରାଙ୍କୋଇସ୍ ଇଂଲର୍ଟଙ୍କୁ 2013 ମସିହାରେ ପଦାର୍ଥ ବିଜ୍ଞାନରେ ନୋବେଲ୍ ପୁରସ୍କାର ପ୍ରଦାନ କରାଯାଇଛି ।



ଇଂ. ମାୟାଧର ସ୍ୱାଇଁ କଟକ ଜିଲ୍ଲାର ନରସିଂହପୁର ବ୍ଲକ୍ ଅନ୍ତର୍ଗତ ବାସେଳିହତା ଗ୍ରାମରେ ୧୯୫୬ ମସିହାରେ ଜନ୍ମ ଗ୍ରହଣ କରିଛନ୍ତି । ସେ ୧୯୭୨ ମସିହାରେ କାନପୁର ବଂଶୀଧର ବିଦ୍ୟାପୀଠରୁ ସମଗ୍ର ଓଡ଼ିଶାରେ ପ୍ରଥମ ଦଶଜଣଙ୍କ ମଧ୍ୟରେ ସ୍ଥାନିତ ହୋଇ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଏହାପରେ ରେଭେନ୍ସା କଲେଜରୁ ଆଇ.ଏସ୍‌ସି., ବୁର୍ଲା ଇଂଜିନିୟରିଙ୍ଗ୍ କଲେଜରୁ ବି.ଏସ୍.ସି. ଇଞ୍ଜିନିୟରିଙ୍ଗ୍ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରି ଏବଂ ଆଇ.ଆଇ.ଟି ରୁର୍‌କିରୁ ସ୍ନାତକୋତ୍ତର ଡିଗ୍ରୀ ଲାଭ କରିଛନ୍ତି । ସେ ଜାତୀୟ ତାପଜ ବିଦ୍ୟୁତ୍ ନିଗମ, ତାଳଚେର ତାପଜ ବିଦ୍ୟୁତ୍ କେନ୍ଦ୍ର, ଓଡ଼ିଶା ଜଳ ବିଦ୍ୟୁତ୍ କେନ୍ଦ୍ର ଓ ମେକନରେ ବିଭିନ୍ନ ପଦରେ କାର୍ଯ୍ୟକରି ୨୦୧୬ ମସିହାରେ ସେବାନିବୃତ୍ତ ହୋଇଛନ୍ତି । ତାଙ୍କର ମୋଟ ୪୨ଟି ପୁସ୍ତକ ପ୍ରକାଶ ପାଇଛି । ଏହା ବ୍ୟତୀତ ବିଭିନ୍ନ ପତ୍ରପତ୍ରିକାରେ ୫୦୦ରୁ ଅଧିକ ଜନପ୍ରିୟ ବିଜ୍ଞାନ ଓ ଶିଶୁଲେଖା ପ୍ରକାଶିତ ହୋଇଛି । ସାହିତ୍ୟିକ କୃତି ପାଇଁ ସେ ଓଡ଼ିଶା ବିଜ୍ଞାନ ଏକାଡେମୀ, ବିଜ୍ଞାନ ପ୍ରଚାର ସମିତି, ରାଜଧାନୀ ପୁସ୍ତକମେଳା, ଭୁବନେଶ୍ୱର ପୁସ୍ତକ ମେଳା ଓ ଅନ୍ୟାନ୍ୟ ସଂସ୍ଥା ଦ୍ୱାରା ସମ୍ମାନିତ ହୋଇଛନ୍ତି ।

Rs.66/-